ପ୍ରକାଶକ:
ସାହିତ୍ୟ-ସଂସାର
ବାଙ୍କାବଜାର: କଟକ—୨

ପ୍ରଚ୍ଛଦ ପଟ୍ଟ:
ଗୋପାଳ କାନୁନଗୋ

ମୁଦ୍ରକ:
ନବଭାରତ ପ୍ରେସ
କଟକ—୨

ପ୍ରଥମ ସଂସ୍କରଣ:
ଅଗଷ୍ଟ, ୧୯୫୫

---

ଦ୍ୱିତୀୟ ସଂସ୍କରଣ:
ସେପ୍ଟେମ୍ବର, ୧୯୫୭

ଏକଟଙ୍କା ଚାରିଅଣା

ବାହାରକୁ ହାତ ଦେଖାଇ ସଚି କହିଲା, ସର ! ଦେଖିଲଣି ନା, ଏଇ ଦେଖ, ବାହାରେ ସୁନାର ଭୁଇଁ !

ପ୍ରତିମା ଆଖିରେ ନିଦ ଲାଗି ଆସିଥିଲା । ଆଖିପତାକୁ ଦୁଇ ହାତ ପାପୁଲିରେ ମଳି ସେ ବାହାରକୁ ଚାହିଁଲା । ସୂର୍ଯ୍ୟ କିରଣରେ ଧାନ କିଆରୀ ସୁନାର ରଙ୍ଗ ଧରିଛନ୍ତି ।

ସଚି କହିଲା, ସର ! ଏପରି ଭୁଇଁ କେବେ ଦେଖିଛ ? ଏଇ ହେଉଛି ସୁନାର ଭୁଇଁ—ଏଇ ଭୁଇଁରେ ସୁନା ଫଳେ । ଏଇ ଦେଖ, ସୁନା ଫସଲ ହସି ଉଠୁଛି କିପରି ।

ପ୍ରତିମା କହିଲା, ପିଲାଦିନେ ଶୁଣିଥିଲି, ଯେଉଁ ଦେଶରେ ଜଗନ୍ନାଥ ଅଛନ୍ତି, ସେଇ ଦେଶ ମାଟିରେ କୁଆଡ଼େ ସୁନା ଫସଲ ହୁଏ—

ସଚି ପ୍ରତିମା କଥାରେ କାନ ନ ଦେଇ କହିବାରେ ଲାଗିଲା, ହଁ ଏଇ ହେଉଛି ସୁନାର ଭୁଇଁ—ଚାହିଁଲେ ଧାନଗୁଡ଼ାକ ଠିକ୍ ଦେଖାଯାଉଛି ସୁନା ପରି । ଯୁଆଡ଼େ ଚାହିଁ ସେ ଆଡ଼େ ଖାଲି ଏଇ ସୁନାର କିଆରୀ, ସୁନା ଗଛ, ସୁନା ଫଳ । ଯାହା ହେଉ ଆମେ ବର୍ତ୍ତି ଗଲେ ଏଥର । ଆଉ ଏଣିକି ଲୋକ ଉପାସରେ ରହିବାକୁ ପଡ଼ିବନି

ପଡ଼ । କପାଳ ଦୋଷରେ ଏତେ ଦିନ ଗଲା, କିନ୍ତୁ ଆଉ ଏଣିକି ନୁହେଁ ।
ଆମର ଭାଗ୍ୟ ଫେରି ଆସିଚି, ଆଉ ଦୁଃଖ କଣ ?

ପ୍ରତିମା ଶୋଇଥିବା ଚୂନବର୍ଷର ଝିଅ ଘରୋଇକୁ କୋଳକୁ ନେଲା । ଶୀତଦିନ । ଏତିକିବେଳୁ ଶୀତ ଆରମ୍ଭ ହୋଇ ଗଲାଣି । ଘୋଡ଼ି ହେବାକୁ କିଛି ନାହିଁ । ଘରୋଇ ପିନ୍ଧିଛି ଖଣ୍ଡେ ଛିଣ୍ଡା ମଇଳା ଫ୍ରକ୍ । ସେଇ ଖଣ୍ଡିକ ତାର ସମ୍ବଳ । ଆଉ ତା ଦେହରେ ସାତଛିଣ୍ଡା ମଇଳା ଶାଢ଼ୀ । ସେ ଶାଢ଼ୀ ଖଣ୍ଡକରେ ନାରୀର ଲଜ୍ଜା ବି ଲୁଚି ଯାଇ ପାରେନା । ଦେହର ସବୁ ଅଙ୍ଗକୁ ଘୋଡ଼ାଇ ପାରୁନି ସେ ଶାଢ଼ୀ ।

ସରି ବାହାରକୁ ଅନାଇ ଅସନ୍ତା ଦିନର ସୁଖଛବି କଳ୍ପନା କରିବାରେ ଲାଗିଲା । ମଣିଷ ଜୀବନରେ ସବୁବେଳେ ଦୁଃଖ ନ ଥାଏ । ଦୁଃଖ ପରେ ପୁଣି ସୁଖ ଆସେ । ଆଜି ଏତେ ଦିନପରେ ହୁଏତ ପୁଣି ସୁଖ ଆସିଛି ।

ହଠାତ୍ କମ୍ପାର୍ଟମେଣ୍ଟରେ କୋଳାହଳ ଲାଗିଗଲା । ସରି ବାହାରୁ ମୁହଁ ଫେରାଇଲା । ଟି. ଟି. ଆଇ ଆସିଚି ଟିକେଟ ଚେକ୍ କରିବାକୁ । ସରି ଦୁଇ ପକେଟରେ ହାତ ପୂରାଇଲା । ଗୋଟାଏ ପକେଟ୍ କଣା । ହାତ ପୂରାଇଲେ ପକେଟ ଦେଇ ହାତ ଗଳିଯିବ । ଆଉ ଆର ପକେଟଟା ଟିକିଏ ଭଲ । ସେଥିରେ ପଡ଼ିଛି ଶେଷ ସମ୍ବଳ ଚୁନିଣିଟାଏ, ଆଉ ଛ' ପଇସିକିଆ ଅମେରିକାନ ରବର ପାନିଆ । କାମିଜର ଗୁନ୍ଥ ପକେଟଟା ନାହିଁ । ପୁଣି ଦୁଇ ପକେଟରେ ହାତ ପୂରାଇ ଖୋଜିବାରେ ଲାଗିଲା । ତାର ଯେପରି ମନେହେଲା ଦୁଇଟି ପୂରା ଟିକେଟ ଆଉ ଗୋଟାଏ ହାଫ୍ ଟିକେଟ ସେ କେଉଁଠି ରଖିଛି । କା' ଟିକେଟତ ନାହିଁ । ତେବେ ସେ କଣ ଟିକେଟ କରିନାହିଁ ? ଟିକେଟ ନ କରିବା ତ ଅପରାଧ ! ଦୋଷ !

ଟି. ଟି. ଆଇ ସଭି ନିକଟକୁ ଆସି ମାଗିଲେ, ଟିକେଟ୍ ?

ସଭି ଅପରାଧୀ ପରି ତଳକୁ ମୁହଁ କରି କହିଲା, ନାହିଁ ।

ଟି. ଟି. ଆଇ ଜୋରରେ ପାଟିକଲେ, କଣ ? ନାହିଁ ?

ସଭି କହିଲା, ନାହିଁ । ଆମେ ଆଶ୍ରୟପ୍ରାର୍ଥୀ—ପଳାତକ !

ଟି. ଟି. ଆଇ. ସଭି, ପ୍ରତିମା ଓ ସରୋଜ ଉପରେ ଆଖି ବୁଲାଇଆଣି କହିଲେ, ହଁ, ତମ ଘର କେଉଁଠି ?

ସଭି ସେହିପରି ଭାବରେ ତଳକୁ ମୁହଁ କରି କହିଲା, ପୂର୍ବ ବଙ୍ଗରେ । ଟି. ଟି. ଆଇ ଟିକିଏ ହସି କହିଲେ, ଓ, ପୂର୍ବ ବଙ୍ଗରେ ? ମନ୍ଦ ନୁହେଁ ତ ! ଯେତେକ ଟିକେଟଲେସ ଟ୍ରାଭେଲର ସମସ୍ତେ ପୂର୍ବ ବଙ୍ଗରୁ ଆସୁଛନ୍ତି ନିଶ୍ଚୟ । ଟି. ଟି. ଆଇ, ଆଜ ଗଭର୍ଣ୍ଣମେଣ୍ଟକୁ ଫାଙ୍କିବାର ଏ ଗୋଟାଏ ଉପାୟ । ଜାଣ ଟିକେଟ ନ କରି ରେଳରେ ଯିବା କେତେ ଦୋଷ ? ଆମ ଦେଶର ମୁଖ୍ୟ ନେତାମାନେ କଣ କହୁଛନ୍ତି ଜାଣ ? ଶୁଣ, ଯେଉଁମାନେ ଟିକେଟ ନ କରି ରେଳରେ ଯାଆନ୍ତି ସେମାନେ ପାପୀ, ଦେଶ ଦ୍ରୋହୀ, ବିଶ୍ୱାସଘାତକ । ସେମାନେ ଦେଶର ଅନେକ କ୍ଷତି କରନ୍ତି । ସେମାନଙ୍କୁ କ୍ଷମା ଦେବା ଉଚିତ ନୁହେଁ ।

ସଭି ଆଗ ପରି ତଳକୁ ମୁହଁ କରି କହିଲା, କହିଲି ପରା ମୁଁ ଆଶ୍ରୟପ୍ରାର୍ଥୀ—ଶରଣାର୍ଥୀ, ମୋ ପାଖରେ ଖାଇବାକୁ ବି ପଇସା ନାହିଁ, ଆଉ ଟିକଟ କରିବି କଣ ?

ଟି. ଟି. ଆଇ କହିଲେ, ତମ ଘର କେଉଁଠି ?

ସେ ବିରକ୍ତ ହୋଇ ଉତ୍ତର ଦେଲା, କହିଲି ପରା ପୂର୍ବ ବଙ୍ଗରେ !

ପୂର୍ବବଙ୍ଗରେ ତ ଜାଣିଲି । ତା ଅପେକ୍ଷା କହୁଛନ୍ତି ଭାରତରେ । ତାଠୁ ବରଂ ଭଲହେବ ଯଦି କହନ୍ତ ମୋ ଘର ପୃଥିବୀରେ । ଟି. ଟି. ଆଇ ହସି ଉଠିଲା ।

ସଇଁ ତା କଥାରେ କାନ ନ ଦେଇ କହିଲା, ଆମେ ଯେତେ-ବେଳେ ଆଶ୍ରୟପ୍ରାର୍ଥୀ ସେତେବେଳେ ଆମକୁ ଟିକେଟ ନ ମାଗିବା ତମର ଦରକାର, ପୁଣି କାହିଁକି ମାଗୁଛ ? କହିଲି ପରା ମୋ ପାଖରେ ଟଙ୍କା ନାହିଁ ଖାଇବାକୁ, ତମ ଟିକଟ ପାଇଁ କୋଉଠୁ ଆଣିବି ?

ଟି, ଟି, ଆଇ, ହସି ହସି କହିଲା, କଣ କହିବୁ ଆପେ ? ଆମର ତ ପୁଣି ଗୋଟାଏ କର୍ତ୍ତବ୍ୟ ଅଛି ! ତମେ ହୋଇପାର ଶରଣାର୍ଥୀ, କିନ୍ତୁ ସରକାର କଣ ଆମକୁ କହିଛନ୍ତି ଯେତେକ ଶରଣାର୍ଥୀ ସେମାନଙ୍କୁ ଛାଡ଼ିଦେବ ବୋଲି ?

ଚଟ୍ କରି ବାହାରକୁ ଅନାଇଲା ସଇଁ । ପଶ୍ଚିମ ଆକାଶରେ ସୂର୍ଯ୍ୟ ଅସ୍ତ ଯାଉଛି । ଦିଗ୍‌ବଳୟରେ କିଏ ଯେପରି ସିନ୍ଦୂରେଲି ରଙ୍ଗ ବୋଳି ଦେଇଛି ! ଗୁରୁଅସ୍ତେ ସୂର୍ଯ୍ୟର ସେ ରଙ୍ଗୀନ ହସ ଲୁଣି ହୋଇ ଯାଇଛି ଯେପରି !

ଟି, ଟି, ଆଇ କହିବାରେ ଲାଗିଲା, ଆଚ୍ଛା କେଉଁଠାରୁ ଆପଣ ଆସିଛନ୍ତି କହିପାରିବେ କି ?

ସଇଁ ବାହାରକୁ ଅନାଇ ଉତ୍ତର ଦେଲା, ପୂର୍ବ ବଙ୍ଗ ।

ଟି, ଟି, ଆଇ ପୁଣି କହିଲା, ହଁ ପୂର୍ବବଙ୍ଗ ତ ବୁଝିଲି, କିନ୍ତୁ ପୂର୍ବ ବଙ୍ଗର କେଉଁ ସ୍ଥାନ ?

ଢାକା···

ଟି, ଟି, ଆଇ ପୁଣି ପଚାରିଲା, ସେଠାରେ ଆପଣଙ୍କର ଜମିଦାରୀ ଥିଲା ନା ?···

ନା···

ତେବେ ଆପଣ କଣ କରୁଥିଲେ ସେଠାରେ ?

ସେଠାରେ ଥିଲି ଅଧ୍ୟାପକ ।

ଏଁ—ଅଧ୍ୟାପକ ?

ହିଁ ପ୍ରଫେସର, ମୋ ନାଁ ସଚ୍ଚିଦାନନ୍ଦ ବୋଷ—ଇତିହାସ ଅଧ୍ୟାପକ, ଢାକା ବିଶ୍ୱବିଦ୍ୟାଳୟ ।

ମିଛ କୁହେଁତ ? ତେବେ ଆଜ ଏ ଅବସ୍ଥା କାହିଁକି ?

ସଚ୍ଚି ଚୁପ୍ ରହିଲା । ଟି. ଟି. ଆଇ. ଆଉ ଥରେ ତା ଉପରେ ଦୃଷ୍ଟି ପକାଇ ଚାଲିଗଲା ।

ଠିକ୍ ଏଇପରି ଏକ ଦିନରେ ସେ ଭଲ ପାଇଥିଲା କମଳକୁ । କମଳ ସେତେବେଳକୁ ପାଠପଢ଼ା ଛାଡ଼ି ଘରେ ଥିଲା । ଆଉ ସେ ପଢ଼ୁଥିଲା ବି. ଏ. । ସେଦିନ, ଅତୀତର ସେଇ ସ୍ମୃତିମଧୁର ମୁହୂର୍ତ୍ତ ଭିତରୁ ହୁଏତ ଆଜି ମନେ ପଡ଼େନା କିଛି—ଖାଲି ଗୋଟାଏ ଝାପ୍ସା ସ୍ମୃତି—ଠିକ୍ ଶିଶୁ ମନରେ ଏ ପୃଥିବୀର ରେଖାପାତ ଯେପରି ଭାବରେ ହୁଏ । କମଳ ଆଜି ସମ୍ପୂର ରୂପରେ ତାର ସ୍ମୃତିକୁ ହସାଇଛି କି ନାହିଁ କିଏ ଜାଣେ ? ଆଉ ସଚ୍ଚି, ତାର ପ୍ରେମିକ ଆଜି ମୁଠାଏ ଭାତ ପାଇଁ ଦୁବଅଡ଼େ ଘୁରି ବୁଲୁଛି ।

ପ୍ରତିମା କୋଳରେ ସନ୍ତୋଷ କାନ୍ଦି ଉଠିଲା । ସଚ୍ଚି ମୁହଁ ଫେରାଇଲା, ପ୍ରତିମାର କୋଳରେ ଦୁଇ ବର୍ଷର ଶିଶୁ ସନ୍ତୋଷ । ଆଖି ଭିତରକୁ ପଶିଯାଇଛି ମୁହଁର ହନୁ ଦେଖା ଯାଉଛି, ବାଳ ପବନରେ ଫୁରୁ ଫୁରୁ ହୋଇ ଉଡ଼ୁଛି । ଛିଣ୍ଡା ଫ୍ରକ୍ ଭିତରୁ ଦେଖାଯାଉଛି ଛାତିର ହାଡ଼ । ପିଲାଦିନେ କି ସୁନ୍ଦର ହୋଇଥିଲା ସନ୍ତୋଷ ! ଠିକ୍

କେଉଁ ଦେଶର ଅତି ସୁକୁମାରୀ ଅଲପଲ ରାଜକୁମାରୀ ପରି ନାଲି ଟୁକୁଟୁକୁ, ସୁନ୍ଦର । ମୁହଁରେ ଦେହରେ ମାଂସ ପୂରି ରହୁଥିଲା । ଦେହର ଚମ ଭିତରୁ ରକ୍ତ ଦେଖାଯାଉଥିଲା । ଯିଏ ଦେଖୁଥିଲା ସେ କହୁଥିଲା, ଏତେ ସୁନ୍ଦର ! ଆଜି କାହିଁ ଗଲା ତାର ସେ ରୂପ ? ତାର ସେ ମାଂସ ?

ପ୍ରତିମା କଂପାର୍ଟମେଣ୍ଟର ବେଞ୍ଚକୁ ଆଉଜି ବସିଛି । ପ୍ରଥମେ ଯେତେବେଳେ ପ୍ରତିମା ତା ଘରେ ଗୋଡ଼ ଦେଇଥିଲା, ସେ ଚାହିଁ ପାରି ନ ଥିଲା । ପୃଥିବୀରେ ଏତେ ସୌନ୍ଦର୍ଯ୍ୟ ପୁଣି ଥାଏ ? ଏତେ ସୁନ୍ଦର କ'ଣ କେହି ହୋଇପାରେ ? ଫୁଲିଲା ଫୁଲିଲା ଗାଲ, ଗୋଲ ଗୋଲ ବାହୁ, ଛୋଟ ଛୋଟ ନାଲିଆ ପାଦ ଦୁଇଟି—ଲମ୍ବା ଲମ୍ବା ଭ୍ରୁ—କି ସୁନ୍ଦର ! ଯେଉଁ ଦିନ ପ୍ରଥମେ ଏଇ ସବୁ ତାକୁ କଣା କହୁଥିଲା, କି ସୁନ୍ଦର ସେଇ କଥା କେଇ ପଦ, କେଡ଼େ ବଡ଼ ଲାଜ ! ଆଜି କାହିଁ ନାହିଁ । ପ୍ରତିମା ଯେପରି ତାର ସବୁ ସୌନ୍ଦର୍ଯ୍ୟ, ସବୁ ରୂପକୁ ପିଙ୍ଗି ଦେଇ ମୃତ୍ୟୁ ଆଡ଼କୁ ଧାଇଁଛି ! ଗାଲ ଭିତରକୁ ପଶି ଗଲାଣି । ଦେହ ଯାକ ହାଡ଼, ମାଂସ ଟିକିଏ ବି ନାହିଁ । ଏଇ କଣ ତାର ସବୁ—ଅତି ଆଦରର ସବୁ ?

ସରୋଜ ପାଟି କଲା, ଚୋର, ଭୋକ । ପ୍ରତିମା ତା ମୁହଁରେ ହାତ ଦେଇ କହିଲା, ମା'ଟି ପଶ, ଶୋଇପଡ଼ । କାଲି ରାତି ଯାକ ଶୋଇ ନାହୁଁ, ଆଜି ପୁଣି ରାତି ଅନିଦ୍ରା ହେଲେ ଦେହ ଖରାପ ହେବ, ଶୋଇ ପଡ଼ ।

ଏଇ ସମୟରେ ଗାଡ଼ି ଆସି ରହିଲା କେଉଁ ଗୋଟିଏ ଷ୍ଟେସନରେ । ଫେରିବାଲା ଡାକ ଛାଡ଼ିଲେ, ପାଚିଲା କେଳା, ପୁରୀ ମିଠାଇ ।

ସଞ୍ଜିବ ପୁଣି ଝରକାରେ ଝରକାରେ ସେ ଅଡ଼କୁ ଚାହିଁ କହିଲା, ବୋଣ୍ଡ, ବାରା, ମିଠେଇ, ପୁରି, ଇଡ଼ଲୀ—ମୁଁ ଖାଇବି ।

ପ୍ରତିମା ତାକୁ ଝିଙ୍କିଇ ଦେଇ କହିଲା, ନା'ରେ ସେଗୁଡ଼ାକ ଖରାପ, ଖାଇଲେ ପେଟ କଷ୍ଟ ହେବ । କଟକରେ ପହଞ୍ଚିଲେ ଆମେ କେତେ କଣ ଖାଇବା···

ସଜି ତଳକୁ ଓହ୍ଲାଇଗଲା । ସେ କାଲି ରାତିରେ ଯାହା କିଛି ଖାଇଥିଲା । ଏତେବେଳଯାଏ କିଛି ଖାଇନି । ପେଟ କ'ଣ ହୋଇ ଯାଉଚି ଭୋକରେ । ତେବେ ଭୋକ ସହି ସହି କେମିତି ଗୋଟାଏ ଅଭ୍ୟାସ ହୋଇଗଲାଣି । ଆଗ ପରି ଆଉ ପେଟ ବଥାଉ ନାହିଁ ନ ଖାଇଲେ । ଏ ଷ୍ଟେସନରେ ଥୋଡ଼ାଏ ପାଣି ପିଇ ନେଲେ ଚଳିବ । କଟକରେ ପହଞ୍ଚୁ ପହଞ୍ଚୁ ରାତି ଦଶଟା କି ଏଗାରଟା ହୋଇ ଯାଇଥିବ । ପକେଟରେ ଅଛି ସେଇ ଗୁଡ଼ାଏ ପଇସା । ମୁଢ଼ି ଗୁଡ଼ାଏ କିଣି ଦେଲେ ତିନି ଜଣଙ୍କର ବେଶ ଚଳିଯିବ ।

ପାଣି ପିଇ ସାରିଲା ବେଳକୁ ଗାଡ଼ି ହୁଇସିଲ୍ ଦେଇ ସାରିଥିଲା । ଗାଡ଼ି ସେତେବେଳକୁ ଗଡ଼ିବାକୁ ଆରମ୍ଭ କଲାଣି । ସଜି ଦଉଡ଼ି ଦଉଡ଼ି ଆସି କଂପାର୍ଟମେଣ୍ଟ ଉପରକୁ ଚଢ଼ିଗଲା । ପ୍ରତିମା କହିଲା, ତଳକୁ କାହିଁକି ଯାଇଥିଲୁ ଶୁଣେ ?

ସେ ଉତ୍ତର ଦେଲା, ନାଇଁ ଶୋଷ ହେଉଥିଲା ସେ ଯାଇଥିଲି ପାଣି ପିଇବାକୁ ।

ପ୍ରତିମା ଚୁପ୍ ରହିଲା । ଇଚ୍ଛା ହେଉଥିଲା କହିବାକୁ, କଣ ଗଣ୍ଡାଏ ଖାଇ ପାଣି ପିଇଲୁ ନା ! କିନ୍ତୁ ପାଟିରୁ କଥା ବାହାରିଲା ନାହିଁ । କାରଣ ସେ ଜାଣେ, ପଇସା ସେ କେଉଁଠୁ ପାଇବେ ? ଯାହାଙ୍କର ପୁଅରପାଇକ ଲାଗି, ଭଲ କାମିଜ ନ ହେଲେ ଚଳୁ ନ

ଥିଲି, ଆଜି ସେ ଚିହ୍ନନ୍ତି କ'ଣ ? ଖଣ୍ଡିଏ ଗେଞ୍ଜିଆ ମଇଳା ଛିଣ୍ଡା ଲୁଗା, ଗୋଟାଏ ଫଟା ହାଫ୍‌ପ୍ୟାଣ୍ଟ ! ସେ ପୁଣି ଏ ଶୀତ ଦିନରେ ଶୀତ ରଖିବ !

ସଙ୍ଗି ବାହାରକୁ ଅନାଇଲି । ଟ୍ରେନର ଗତି ଯା ଭିତରେ ବଢ଼ି ଯାଇଛି । ଟ୍ରେନଟା ଖୁବ୍ ଜୋରରେ ଛୁଟିଛି । କେଉଁ ଆଡ଼େ ? କଣ ତାର ଲକ୍ଷ୍ୟ ? ଜୀବନଟା ବି ଠିକ୍ ଏଇ ଟ୍ରେନ ପରି ଛୁଟି ଚାଲିଛି କେଉଁ ଅସୀମର ପଥରେ ଅବିଶ୍ରାନ୍ତ ଭାବରେ । ଦୂରର ଆକାଶରେ ଚନ୍ଦ୍ର ଉଠିଛି । ଚତୁର୍ଦ୍ଦିଗରେ ଜ୍ୟୋସ୍ନାର ଅପୂର୍ବ ଉଚ୍ଛ୍ୱାସ । ଦୂରର ସବୁ ଜିନିଷ ଖୁବ ସୁନ୍ଦର ହୋଇ ଦେଖା ଯାଉଛି । ଦୂରର ପାହାଡ଼, ଦୂରର ଆକାଶ କି ସୁନ୍ଦର ! ଜ୍ୟୋସ୍ନାର ଆବରଣ ଭିତରେ ପୃଥିବୀର କୁତ୍ସିତା ଲୁଚି ଯାଇଛି କେଉଁ ଆଡ଼େ ।

ଥରେ ପତ୍ର ଚିଠି ଦେଇଥିଲି ତା ପାଖକୁ—ଯେତେବେଳେ ଫାଲ୍‌ଗୁନର ମଳୟ ବହେ, ଯେତେବେଳେ କମନୀୟ ଜ୍ୟୋସ୍ନା ପୃଥିବୀରେ ଅବତରଣ କରେ, ଯେତେବେଳେ ବର୍ଷା ଆସେ ଧୀର ପଦକ୍ଷେପରେ, ସେତେବେଳେ ମୁଁ ଭାବେ, ତମେ ଆସିବ, ଆସିବ ଫାଲ୍‌ଗୁନର ସେ ପ୍ରେମମଳୟରେ, ଜ୍ୟୋସ୍ନାର ସେ କମନୀୟ ବିଳାସ ଭଳି, ଧୀର ପଦକ୍ଷେପରେ । ଆଜ ଯଦି ପ୍ରଥମାକୁ ଚିଠି ଲେଖିବାକୁ ପଡ଼ନ୍ତା, ସେ ହୁଏତ ଲେଖନ୍ତା, ଯେତେବେଳେ ଦାରୁଣ କ୍ଷୁଧାରେ ଆଖିରୁ ଝରିପଡ଼େ ଅଶ୍ରୁ, ଯେତେବେଳେ ଯନ୍ତ୍ରଣାରେ ଶରୀର ଚିତ୍କାର କରେ, ଯେତେବେଳେ ଦୁଃଖ ଆସେ ଧୀର ପଦକ୍ଷେପରେ, ସେତେବେଳେ ମୁଁ ଭାବେ ତମେ ଆସିବ, ଆସିବ କ୍ଷୁଧାର ସେ ଅଶ୍ରୁରେ, ଯନ୍ତ୍ରଣାର ସେ ଚିତ୍କାରରେ, ଦୁଃଖର ସେ ଧୀର ପଦକ୍ଷେପରେ···।

ଚନ୍ଦ୍ର ! ଏଇ ଚନ୍ଦ୍ର, ଅତୀତର କେତେ ସ୍ମୃତି ଏଇ ଚନ୍ଦ୍ର ବିଷୟରେ ଭାବି ଭାବି ତାକୁ ଚାହିଁ ଚାହିଁ କଟିଚି । କିନ୍ତୁ ଆଜି ? ଆଜି ହୁଏତ ଚନ୍ଦ୍ରର ମୂଲ୍ୟ କିଛି ନାହିଁ । ଯଦି ଚନ୍ଦ୍ର ଠିକ୍ ସେଇ ଅନ୍ଧାରରେ ବଡ଼ ଦିଶନ୍ତି, କିମ୍ବା ଭଲ ହୋଇଥାନ୍ତା ତେବେ ଚନ୍ଦ୍ରର ମୂଲ୍ୟ ତା ପାଖରେ ନିଶ୍ଚୟ ବର୍ଦ୍ଧିତ ହୋଇଥାନ୍ତା ।

ଦେହ ଥରି ଉଠୁଛି ଶୀତରେ । ଟ୍ରେନ ଚାଲିଛି । ବାହାରର ଶୀତ ପ୍ରତି ତାର ଭ୍ରୂକ୍ଷେପ ନାହିଁ । ଦୁନିଆର ଶୋକ, ଯନ୍ତ୍ରଣାର ଠମକ ପ୍ରତି ତାର ଭ୍ରୂକ୍ଷେପ ନାହିଁ । ଆଜି ସେ ଯନ୍ତ୍ର ହୋଇଯାଇଛି ଏଇ ଟ୍ରେନ ପରି ।

ପେଟ ଭିତରୁ ଉଠୁଛି ଯନ୍ତ୍ରଣା—ଉଃ, କି ଅସହ୍ୟ । ଆଉ କଣ ତାକୁ ତ୍ୟାଗ କରିବାକୁ ହେବ ? ସେ ଦେଇଛି ପ୍ରତିମାଙ୍କ ରକ୍ତ ମାଂସ, ସବେଶଙ୍କର ରକ୍ତମାଂସ, ଧନ ସଂପଦ, ସବୁ । ଆଉ କଣ ଦେଲେ ଏ ଯନ୍ତ୍ରଣା ଯିବ ? ଏ ଶୋକ, ଏ ଅଭାବ ଯିବ ? ଦୁଇବର୍ଷ ତଳେ । ଡାକ୍ତର ସେ କଣକୁ ଦୁଇମହଲା କୋଠା । ସେଇ କୋଠାଟି ହସୁଥିଲା ଦିନରାତି । ବୋଉ, ବାପା, ପ୍ରତିମା, ସବେଶଙ୍କୁ ନେଇ ସତେ ଯେପରି ସେଠି ଭୂସ୍ୱର୍ଗ ତୋଳା ହୋଇଥିଲା । ସୁଖରେ ଦିନ କଟି ଯାଉଥିଲା ।

ହଠାତ୍ ଦିନେ ରାତିରେ ପ୍ରତିମା ହଲାଇ ଦେଇ କହିଲା, ଶୁଣୁଛ ?

ଆଖିରେ ହାତ ମଳି ସେ ଉଠିଲା । ପଚାରିଲା, କଣ ?

ପ୍ରତିମା କହିଲା, ଶୁଣୁନାହିଁ ?

ହଁ ତ କଣ ଶୁଣାଯାଉଛି । ସେ କାନକୁ ଡେରାଇ ଗଲା । ଦଶଜଣ ଲୋକ କବାଟ ଭାଙ୍ଗି ଭିତରକୁ ପଶିଆସିଲେ । ଡର ଭୟ

ହୋଇ ସେ ଉପରକୁ ଉଠିଆସିଲା । ସବେର୍ଦ୍ଧ ପ୍ରତିମାକୁ ଧରି ପଶିଗଲା ଘର ପଛ ପଟେ ଥିବା ଗୋଟିଏ ବଖରାଟିରେ ଯେଉଁଟି ରନ୍ଧା-ଥିଲା ଘର । ତାପରେ ଠିକ୍ ମନେ ପଡ଼େନା । କିନ୍ତୁ ସେଇ ରାତି ଠାରୁ ଆରମ୍ଭ ହେଲା ତାର ଦୁଃଖର ଦିନ । ବାପ ମା'ଙ୍କର ରକ୍ତାକ୍ତ ଦେହ ସେ ଦେଖିଛି, ନିଜ ଆଖିରେ ସେ ଦେଖିଚି ତାର ସାନଭାଇର କଟାମୁଣ୍ଡ, ପ୍ରତିମା ପ୍ରତି ହୋଇଥିବା ଅତ୍ୟାଚାର ସେ ଦେଖିଛି । ସବୁ ଦେଖିଛି । ଜମିଲ, ଆଉ ଗୁଲସନ ତାର ପ୍ରିୟ ଛାତ୍ର । ସେ ଦିନ ରାତିରେ ସେ ଯେତେବେଳେ ଝର୍କା ପଳାଇଯାଏ—ଜମିଲ ଆଉ ଗୁଲସନ୍ଙ୍କ ଆଖିରେ ଆଗର ସେଇ ସରଳତା କେଉଁଆଡ଼େ ଉଭେଇ ଯାଇଚି ସେସବୁ । ଜମିଲ ଆଉ ଗୁଲସନ ସେ ବର୍ଷ ଇତିହାସ ଅନର୍ସରେ କିପରି ଫାଷ୍ଟ ହେବେ ସେଥିପାଇଁ ସେ ଚେଷ୍ଟା କରୁଥିଲା । ଆଉ ତାର ପ୍ରତିଦାନ କଣ ଏୟା ? ଜମିଲ ଆଉ ଗୁଲସନ୍ଙ୍କ ଆଖିରେ ସେ ଯେଉଁ ହିଂସ୍ର ଚାହାଣୀ ଦେଖିଥିଲା ପ୍ରଥମେ ସେ ଦିନ, ଆଜି ଆଖି ଆଗରୁ ଲିଭିନାହିଁ ସେ ଚାହାଣୀ ! ଓଃ, କି ଭୀଷଣ !

ସେମାନଙ୍କର କି ଅପରାଧ କରିଥିଲା ସେ ? ସେତ ଠିକ୍ ତାଙ୍କରି ପରି ମଣିଷ । ମଣିଷ କଣ ମଣିଷର ଶତ୍ରୁ ହୋଇ ପାରେ ? ସେ ଦିନ ସେଇ ମୁହୂର୍ତ୍ତରେ ତାକୁ ଯେପରି କିଏ କହୁଥିଲା, ହଁ ମଣିଷ ହେଉଚି ମଣିଷର ସବୁଠାରୁ ବଡ଼ ଶତ୍ରୁ ।

ସେ ଦିନ ତାର ସୁଖର ସଂସାର ଶେଷ ହୋଇ ଗଲା । ଆଦରର ମା'ବାପ ଭାଇ କେଉଁଆଡ଼େ ଗଲେ ? ଆଜିବି ସେ ବିଶ୍ୱାସ କରିପାରେନି ସେମାନେ ମରିଛନ୍ତି ବୋଲି । ସମସ୍ତେ ବଦଳେଇ ଯାଇଚି ସେମାନଙ୍କୁ କେଉଁ କୁଟ କୁଚକ୍ରକୁ । ଆଉ କେତେ ଦିନ ପରେ ଐତିହାସିକମାନେ ଲେଖିବେ ଇତିହାସ—ପୂର୍ବବଙ୍ଗରେ

ସାଂପ୍ରଦାୟିକ ଗଣ୍ଡଗୋଳ ଲାଗିଥିଲା । ସେଥିରେ ବହୁତ ଲୋକ ମରିଥିଲେ । ବହୁତ ଧନୀ କାଙ୍ଗାଳ ହୋଇ ଯାଇଥିଲେ । ବହୁତ ଜମିଦାର ନିଃସ୍ୱ ହୋଇ ଯାଇଥିଲେ । କିନ୍ତୁ ଇତିହାସ କଣ କହିବ ପ୍ରଫେସର ସଇଁ ବୋଷ କଥା ? ସେ ଇତିହାସରୁ କଣ ମିଳିବ, କିପରି ସଇଁ ବୋଷର ପରିବାର ଏଇ ସାଂପ୍ରଦାୟିକ ଗଣ୍ଡଗୋଳରେ ଧ୍ୱସ୍ତ ବିଧ୍ୱସ୍ତ ହୋଇ ଯାଇଛନ୍ତି ବୋଲି ? ନା, ହୁଏତ । ଇତିହାସ ଦିନେ ଥିଲା ରାଜା ଓ ଧନୀ ସଂପ୍ରଦାୟର ଇତିହାସ । ଆଜି ଭାରତ ସ୍ୱାଧୀନତା ଲାଭ କଲା ପରେ ସେ ଇତିହାସ ହୋଇଯାଇଛି ଗଣର ଇତିହାସ, ଗଣତନ୍ତ୍ରର ଇତିହାସ; ଅତୀତର ରାଜତନ୍ତ୍ରର ଇତିହାସ ନୁହେଁ, ଅତୀତର ସାମ୍ରାଜ୍ୟତନ୍ତ୍ରର ଇତିହାସ ନୁହେଁ । କିନ୍ତୁ ଆଜିର ଗଣ କିଏ ? ସଇଁ ବୋଷ ହୁଏତ ସେ ଗଣ ନୁହେଁ— ସେ ଗଣ ଭିତରେ ନାହିଁ—ସେ ଗଣ ବାହାରେ ସିଏ ।

ସଇଁ ବୋଷର ବାପା, ମା, ଭାଇ ସବୁ ଆଜି ଇତିହାସରେ ପରିଣତ ହୋଇ ଯାଇଛନ୍ତି ସମ୍ପୂର୍ଣ୍ଣ ଭାବରେ । ଇତିହାସରେ ହୁଏତ ସେମାନେ ରହିବେ । କିନ୍ତୁ ଇତିହାସର ସେ ଗର୍ଭରୁ ସେମାନଙ୍କୁ କିଏ ବାହାର କରିପାଇ ପାରିବ ? ହୁଏତ ନୁହେଁ । ଆଜି ଗଣତନ୍ତ୍ର ଯୁଗରେ ବ୍ୟକ୍ତିର ସ୍ଥାନ ନାହିଁ । ଅସଂଖ୍ୟ ଗଣ ପାଇଁ ଜଣେ ସବୁ ସ୍ୱାର୍ଥତ୍ୟାଗ କରିବାକୁ ହୁଏତ ବାଧ୍ୟ ।

ସେ ତ ଲେଖି ପାରନ୍ତା ଏକ ଇତିହାସ—ଯେଉଁ ଇତିହାସରେ ରହନ୍ତା କିପରି ତାର ପରିବାର ଦିନେ ଅକସ୍ମାତ ଧ୍ୱଂସ ପାଇଯାଇଛି, କିପରି କରୁଣ ଭାବରେ ବଳିଦାନ ପାଇଁ । ସେ ଇତିହାସର ପ୍ରତ୍ୟେକ ପୃଷ୍ଠାକୁ ଲେଖନ୍ତା ନିଜର ବୁକୁ ରକ୍ତରେ,ସେ ରକ୍ତରେ ସେ ଲେଖନ୍ତା ଆଜିକାଲିର ଗଣତନ୍ତ୍ର ଯୁଗ କଥା ନୁହେଁ—ଏହି ଗଣତନ୍ତ୍ର ଭିତରେ

ଯେଉଁ ଅଦ୍ଭୁତ ସାହସିକତା, ଅଦ୍ଭୁତ ନେତୃତ୍ୱ ମୁଣ୍ଡ ଟେକି ଉଠିଛି ତାର ଅପସ୍ମୃତିରେ । ସେ ଲେଖନ୍ତୁ। ଇତିହାସ ପୃଷ୍ଠା ପରେ ପୃଷ୍ଠା, ଜଣେ ଅନେକଙ୍କ ପାଇଁ ପ୍ରାଣ ଦେବାର କି ଆବଶ୍ୟକତା ଅଛି ? ଜଣେ ଯଦି ଶହେଜଣଙ୍କ ପାଇଁ ଆତ୍ମ ତ୍ୟାଗ କରେ, ନିଜର ସୁଖ ସ୍ୱାଚ୍ଛନ୍ଦ୍ୟରେ ବଳି ଦିଏ ତେବେ ତାର ଲାଭ କେଉଁଠି ? ହୋଇପାରେ ଆଜି ଶହେ ଜଣ ବଞ୍ଚିବେ, ହୋଇପାରେ ଅନ୍ତୁର ହଜାରେ ଜଣ ଏ ପୃଥିବୀରେ ଆଉ କେତେଦିନ ପାଇଁ ସୁବିଧାରେ ବଞ୍ଚି ରହି ପାରିବେ, କିନ୍ତୁ ତାର ? ତା'ର କଣ ହେଲ ?

ଆଜି ଗଣତନ୍ତ୍ରର ଏ ଯୁଗରେ ଏକଥା କଳି ଦଣ୍ଡ ହେଉଛି । ସଭି ଗୁହାଁଲ ଆକାଶକୁ । ଆକାଶରେ ଚନ୍ଦ୍ର ହସୁଛି । ଆଜି ଯଦି ଗଣତନ୍ତ୍ର ଦରବାରରେ ଏହି ଚନ୍ଦ୍ରର ବିଚାର ହୁଏ, ହୁଏତ ବିଚାର ଫାଶୀ ପାଇବ । ଅତୀତରେ କେତେ କେବାର ସମସ୍ୟା ସୃଷ୍ଟି କରିଛି ଏହି ଚନ୍ଦ୍ର । ଏହି ଚନ୍ଦ୍ର କାରଣ, ଏହି ଜ୍ୟୋସ୍ନା ରାତି କଥା ଭାବି ଭାବି ଅନେକଙ୍କ ମୁଣ୍ଡରେ ଜାଗିଛି ଭଲ ପାଇବାର ନିଶା, କବିତା ଲେଖିବାର ମୋହ···ଏହିପରି ଅସଂଖ୍ୟ ମୂଲ୍ୟହୀନ ଖିଆଲ ! ଏଇ ଚନ୍ଦ୍ରକୁ ସେମାନେ ନ ଦେଖିଥିଲେ ହୁଏ ତ ସେମାନେ ସମଗ୍ର ଜାତିର ମଙ୍ଗଳ ପାଇଁ ଉତ୍ପାଦନ ଅନ୍ତୁର କରିଥାନ୍ତେ ଯାହା ଦରକାରୀ, ଜାତି ପାଇଁ ଉପକାରୀ—ସେପରି ଜିନିଷର ଉତ୍ପାଦନ ହୁଏତ ବଢ଼ି-ଥାନ୍ତା । କିନ୍ତୁ ଏଇ ଚନ୍ଦ୍ର ପାଇଁ, ହୋଇଛି କଣ ? ଥୋଡ଼ାଏ ବାଜେ କବିତା ଲେଖା, ବାଜେ କେତେଟା ନାରୀଙ୍କ ପାଇଁ ପ୍ରେମ ନିଶା ! ସମୟ ନଷ୍ଟ, ତା ସଙ୍ଗେ ସଙ୍ଗେ କାର୍ଯ୍ୟ ଓ ଶକ୍ତି ବ ନଷ୍ଟ । କେତେ-ଗୁଡ଼ାଏ ଲୋକଙ୍କ ଶ୍ରେଷ୍ଠ ଜାତିକୁ ବଞ୍ଚିତ କରିବା କଣ କମ ଅପରାଧ ? ଚନ୍ଦ୍ର ନିଶ୍ଚୟ ଏତେବଡ଼ ଗୁରୁତର ଅପରାଧ ପାଇଁ ଫାଶୀ ପାଆନ୍ତା ।

ସୃଷ୍ଟିର ନିସ୍ତବ୍ଧତା ଭେଦ କରି ଟ୍ରେନ୍ ଗୁଡ଼ିକ ଛୁଟୁଛି । ସେ ହୁଏତ ଏଇ ଗଣତନ୍ତ୍ରକୁ ଲକ୍ଷ୍ୟ କରୁଛି । କାରଣ ଏଇ ଲୋକଙ୍କ ସୃଷ୍ଟି ଉପଭୋଗ କରୁ ଥିବାରୁ ତେଣୁ ଦୋଷୀ ବୋଲି ଜାଣିଲେ ହୁଏତ ଗଣତନ୍ତ୍ର ତାକୁ ଫାଶୀ ଦେଇଦେବ !

ହଁ, ସେ ଇତିହାସ ଲେଖିବ, ଇତିହାସ ,ଲେଖିବ କପର ସୁନ୍ଦରୀ ପ୍ରତିମା ତାର ସମସ୍ତ ସୌନ୍ଦର୍ଯ୍ୟକୁ ଫିଙ୍ଗି ମୁଣ୍ଡ ଉପରେ ଧାଇଁଛି, ଶିଶୁ ସରୋଜ ତାର ସ୍ୱର୍ଗୀୟ ସରଳତା ଛାଡ଼ି,'ଚୋର' 'ଚୋର' ବୋଲି ଚିତ୍କାର କରୁଛି ଆଉ ପ୍ରଫେସର ସଙ୍ଗି ବୋଷ ଇତିହାସ ଗବେଷଣା ଗ୍ରନ୍ଥ ମାନଙ୍କୁ ଦଳାଇ ଦେଉଛି ଭାତର ଅନ୍ୱେଷଣରେ ।

ଏ ଇତିହାସର କଣ କିଛି ମୂଲ୍ୟ ନାହିଁ ? ଗଣତନ୍ତ୍ର କଣ ଏ ଇତିହାସକୁ ଆବର୍ଜନା ବୋଲି ଫିଙ୍ଗି ଦେବ ? ଅଥବା ଏ ଗଣତନ୍ତ୍ର ଯୁଗରେ ଗୋଟିଏ ଅନ୍ନପ୍ରାର୍ଥୀ ବର୍ଗର ଇତିହାସ କଣ ଗଣତନ୍ତ୍ରର ଇତିହାସ ନୁହେଁ ? ହୁଏତ ନୁହେଁ ।

ପ୍ରତିମା ଡାକିଲା । କହିଲା, ଏଇ ଆଗ ଷ୍ଟେସନରୁ ମୁଢ଼ି ଟିକେ କିଣି ନବ ।

ସଙ୍ଗି କହିଲା, ମୁଢ଼ି କଣ ଏତେ ସସ୍ତାରେ ମିଳିବ ? ଦେଖେ ଯଦି ମିଳିବ ତ କିଣି ନବା ।

ଆଗ ଷ୍ଟେସନରୁ ତିନିଅଣାର ମୁଢ଼ି କିଣିଲା ସଙ୍ଗି । ଖୁବ୍ ଦରକାରରେ ଆସିଲା ଏ ତିନିଅଣା । ବାକି ରହିଲା ଅଣାଏ ।

—ଦୁଇ—

ସକାଳୁ ପ୍ରଥମେ ନିଦ ଭାଙ୍ଗିଲା ସର୍ଜିର । ନିଦ ତ ଭାଙ୍ଗି ନ ଥାନ୍ତା ଏତେ ଶୀଘ୍ର, ଯଦି ଉପରୁ ତା ଉପରେ ପାଣି ପଡ଼ି ନ ଥାନ୍ତା । ବାରଣ୍ଡାରୁ ତଳକୁ ଓହ୍ଲେଇ ଉପରକୁ ଚାହିଁଲା । ଉପର ମହଲାର ବାରଣ୍ଡାରେ ତାର ଜାଲି ଦିଆ ହୋଇଛି । ସେଇ ତାରଜାଲିର ଗୋଟାଏ ଜାଗାରେ କଣା ହୋଇଛି । ସେଇ କଣା ବାଟେ କିଏ ପାଣି ପିଙ୍ଗି ଦେଲା କି କଣ ! ପ୍ରତିମା ଆଉ ସରୋଜକୁ ଉଠାଇବ କି ନ ଉଠାଇବ ଭାବୁଛି, ପ୍ରତିମା ଉପରେ ଉପରୁ ଧୂଳି ଆଉ ସବୁବା ଗୁଣ୍ଡା ଥୋଡ଼ାଏ ଆସି ପଡ଼ିଲା । ସେ ଆଉ ଥରେ ଉପରକୁ ଚାହିଁଲା । ଉପର ମହଲାର ବାହାରୁ ଗୋଟିଏ ମୋଟା ସ୍ତ୍ରୀର ହାତ ଲୁଚି ଯାଉଛି । ପ୍ରତିମାକୁ ଉଠାଇଲା । ପ୍ରତିମା କହିଲା, ଇସ୍ ଏ ଧୂଳିଗୁଡ଼ାକ କେଉଁଠୁ ଆସି ପଡ଼ିଲା ?

ସର୍ଜି କହିଲା, ଚୁପ୍ ଚୁପ୍, ବଡ଼ ଲୋକ, ପାଟି ଫିଟେଇବାର କୁ ନାହିଁ । ଦେଖିଲି ଟମା ଉପରେ କିପରି ମଇଳା ପାଣି ପଡ଼ୁଛି !

ପ୍ରତିମା କହିଲା, ସକାଳଟାରୁ ଏତେ ଶୀତରେ ଏଇ ପାଣି ! ସରୋଜକୁ ତଳୁ ଉଠାଇ ଆଣିଲା । ତଳେ ଖଣ୍ଡେ ଛିଣ୍ଡା ଅଖା ପତା ହୋଇଥିଲା । ସେଇଟାକୁ ପ୍ରତିମା ଗୋଟାଇ ଆଣିଲା । ସର୍ଜି ଚାଲିଲା ଆଗରେ, ତା ପଛରେ ପ୍ରତିମା । ସେ ଯାଇ ଗୋଟିଏ ପାଣିକଳ ଆଗରେ ସରୋଜକୁ କାଖରୁ ତଳକୁ ଓହ୍ଲାଇ ଦେଲା । ପାଣିକଳ ଫିଟାଇ ପେଟେ ପାଣି ପିଇଲା । ପ୍ରତିମା କହିଲା, ମୁଁ ବି ଟୋପାଏ ପାଣି ପିଇବି —ଭାରି ଶୋଷ ହେଉଛି ।

ସର୍ଜି ହସିଲା । କହିଲା, ହଁ ପରା, ଶୀତ ଦିନ ସକାଳେ ତ ଭାରି ଶୋଷ ହୁଏ ! ପ୍ରତିମା ଚୁପ୍ ରହି ପାଣି ପିଇବାକୁ ଲାଗିଲା ।

ଏଇ ସମୟରେ ସବେଶ୍ୱଙ୍କ କହିଲା, ବାପା, ଭାରି ଶୀତ ହେଉଛି—

ସଇଁ ଛିଣ୍ଡା ଅଖାଟା ତଳୁ ଗୋଟାଇ ସବେଶ୍ୱ ଦେହରେ ଗୁଡ଼ାଇ ଦେଇ ମୁହଁ ପାଖଟା ତା ଦୁ ହାତରେ ଧରାଇ ଦେଲା ।

ହେ, ଉଠୁଚି ସେଠୁ, ମୁଁ ଗାଧୋଇବି,

ସଇଁ ଅନେଇଲା । ଷ୍ଟେଥି ଭ୍ରସରେ ଦାନ୍ତ ଘଷି ଘଷି ଜଣେ ବାବୁ ତାର ଆଡ଼କୁ ଅନାଇ କହୁଛନ୍ତି । ବାବୁଙ୍କ ଦୁ ହାତର ଅଙ୍ଗୁଳିରେ ତିନୋଟା କି ଚାରିଟା ସୁନାମୁଦି ଦେଖାଯାଉଥାଏ । ପ୍ରତିମା ତାଙ୍କ ପାଟି ଶୁଣି ପାଣିକଳ ପାଖରୁ ଚାଲିଆସିଲା । ପୁଣି ସଇଁ ଚାଲିଲା । ଆଗରେ ପ୍ରତିମା, ତା ପଛରେ ତା ହାତ ଧରି ଚାଲିଲା ସବେଶ୍ୱ ।

ଏତେବେଳ ଯାଏ ସୂର୍ଯ୍ୟକିରଣ ପଡ଼ିନାହିଁ । ଦେହ ଶୀତରେ ଥରି ଉଠୁଛି । କାନ, ବେକ, ହାତ ଗୋଡ଼ ଥଣ୍ଡାରେ ଜଡ଼ ହୋଇ ଆସୁଚି ।

ସକାଳ ଟ୍ରେନ ପାଇଁ ଟାଉନ୍ ବସ୍‌ଟା ଖୁବ୍ ଜୋରରେ ଚାଲିଗଲା ।

   

ଦିନ ପ୍ରାୟ ନଅଟା ହେବ ।

ସଇଁ ରାସ୍ତାରେ ଯାଉଥିବା ଜଣେ ଲୋକକୁ ପଚାରିଲା—ଆଜ୍ଞା, ଏଠି ଧର୍ମଶାଳା କେଉଁଠି ଅଛି ? ଲୋକଟି ପ୍ରଥମେ ଚାହିଁଲା ତା ଆଡ଼େ, ତାପରେ କିଛି ନ କହି ଅଗକୁ ଚାଲିଗଲା । ସଇ ପୁଣି ଆଉ ଗୋଟିଏ ଲୋକକୁ ପଚାରିଲା, ଭାଇ, ଧର୍ମଶାଳା କେଉଁଠି କହିପାରିବ ? ଲୋକଟି ହଠାତ୍ ରହିଯାଇ କହିଲା, ତମ ଘର କେଉଁଠି ? ସେ ସେ କଥାକୁ ନ ଶୁଣି ପୁଣି ପଚାରିଲା, ଧର୍ମଶାଳା— ଧର୍ମଶାଳା କହିପାରିବେ ?

ଭିକାରିଙ୍କର ପୁଣି ଧର୍ମଶାଳା ଦରକାର ହେଲାଣି । ଏତେବ ବଡ଼ ସହରଟି ବୁଲିଗଲି । ଶେଷରେ ଗୋଟାଏ ଭିକାରିଠାରୁ ଧର୍ମଶାଳାର ସନ୍ଧାନ ମିଳିଲା । ସେ ବୁଲିଲି ଧର୍ମଶାଳା ଉଦ୍ଦେଶ୍ୟରେ । ଧର୍ମଶାଳାରେ ପହଂଚି ମ୍ୟାନେଜରଙ୍କୁ ଇଂରେଜୀରେ ପଚାରିଲି, ଜାଗା ମିଳିବ ? ମ୍ୟାନେଜର ତା ଆଡ଼କୁ ଚାହିଁ ପୁଣି ମୁହଁ ଫେରାଇନେଲା । ସେ ଆଉଥରେ ପଚାରିଲା, କଣ ଜାଗା ମିଳିବ ? ମ୍ୟାନେଜର ଉତ୍ତର ଦେଲା, ହଁ, କିନ୍ତୁ ଦିନକୁ ଦଶ ପଇସା, ଲାଇଟକୁ ଦଶପଇସା ।

ଦଶ ପଇସା କାହିଁ ? ପକେଟରେ ପଡ଼ିଛି ଅଣିଟିଏ । ଆଉ କିଛି ପଇସା ହେଲେ ଆଜି ଦିନକର ଖାଇବା ଅନ୍ତତଃ ଚଳିଯାଆନ୍ତା । ହଉ ଦେଖାଯାଉ ସହର ପୁଣି ଅଛି । ଆଉଥରେ ପଚାରିଲି, ସିଏ ରାତିରେ ନ ରହିବ ? ମ୍ୟାନେଜର ଏଇ କଥାରେ ରାଗି ଗଲେକି କଣ । ତା ଆଡ଼କୁ ଚାହିଁ କହିଲା, କାହାପାଇଁ ପଚାରୁଛନ୍ତି ?

ମୋ ପାଇଁ ।

ମ୍ୟାନେଜର ହସି ଦେଇ କହିଲା, ଏଠି ଯାତ୍ରୀମାନେ ରହନ୍ତି, ଭିକାରୀମାନେ ରହନ୍ତି ନାହିଁ । ତାହା ବାରଣ୍ଡା ଦେଖିବ ଯାଅ ।

ଓଃ, ବାବୁ ଶୁଣ, ମୁଁ ପୂର୍ବ ବଙ୍ଗରୁ ଆସିଛି, ମୁ ଅଶ୍ରୟ ପ୍ରାର୍ଥୀ—ମାନେ ମୋର କିଛି ନାହିଁ···ଏଠିକି ପଳେଇ ଆସିଛି । ସରକାରଙ୍କଠାରୁ କଣ ସାହାଯ୍ୟ ମିଳିପାରେ···

ଜଣେ ଯାତ୍ରୀ ଏଇ ସମୟରେ ପଶି ଆସି କହିଲା, ଗୋଟାଏ ରୁମ ଦରକାର ଉପର ମହଲାରେ, ମିଳିବ ?

ମ୍ୟାନେଜରର ବାବୁ ହସି ହସି କହୁଥିଲେ, ମିଳିବ ।

ସଇଁ ଧର୍ମଶାଳାର ପାହାଚ ଦେଇ ଓହ୍ଲାଇ ଆସିଲା ତଳକୁ । ପ୍ରତିମା ସର୍ବେଶ୍ୱରକୁ କାଖରେ ଧରି ତାକୁ ଅପେକ୍ଷା କରୁଥିଲା । ସଇଁ କହିଲା, ଜାଣିଲ ସବି, ଏଠି ବି ଆମର ସ୍ଥାନ ନାହିଁ··· । ଅନେକ ଦିନ ପରେ ଆଖିରୁ ତାର ଦୁଇ ବିନ୍ଦୁ ଲୁହ ଗଡ଼ି ପଡ଼ିଲା । ମଇଳା ଗାମିଛରେ ଆଖି ପୋଛି ଦେଇ ସେ ଚାଲିଲା । ତାଙ୍କ ସ୍ୱାତରେ ଦିଅଣା ମୁଢ଼ି ସେ ଖାଉଥିଲା । ପ୍ରତିମା ଆଉ ସର୍ବେଶ୍ୱର ବି-ସେଇଆ । ମୋଟେ ତିନି ଅଣାର ମୁଢ଼ି, ଆଉ ଖାଇବାକୁ ତିନିଜଣ ।

ଗୋଟାଏ ଭିକାରୀ ଜଣକ ଦୁଆରେ ଠିଆ ହୋଇ ମାଗୁଥାଏ, ହେ ବାବୁ ଭିକ ଗଣ୍ଡାଏ ଦିଅ ।···ସେ ଯଦି ଅଳ୍ପ ପାଠ ପଢ଼ିଥାନ୍ତା କି ମୂର୍ଖ ହୋଇଥାନ୍ତା, ତେବେ କି ଆନନ୍ଦରେ ସେଁ ଭିକ ମାଗିପାରୁଥାନ୍ତା । କିନ୍ତୁ ଏତେ ଭୋକ ଉପାସ, ଅଭାବରେ ରହି ରହି ମଧ୍ୟ ଭିତରର ସେ ଅହଙ୍କାର ଆଜିଯାଏ ଯେପରି ଯାଉନାହିଁ । କେଉଁଥିପାଇଁ ତାର ଏ ଅହଙ୍କାର ? କେଉଁଥିପାଇଁ ତାର ଏ ଗର୍ବ ?

ସେ କାଳେ କେଉଁ ଦିନ ପିଲା ଇତିହାସ ଲେଖୁଥିଲା, କିନ୍ତୁ ଆଜି ସେ ଇତିହାସ ସୃଷ୍ଟି କରି ଚାଲିଛି । ଏ ଇତିହାସ ଭିଆରି ଚାଲିଥିବ ହୁଏତ ତାର ମୃତ୍ୟୁ ଯାଏ ।

ସର୍ବେଶ ଏଇ ସମୟରେ କାନ୍ଦଣା ଆରମ୍ଭ କରି ଦେଲା ଖାଇବା ପାଇଁ । ପ୍ରତିମା ତାକୁ ତଳେ ବସା ଦେଇ କହିଲା, ଖା, ଖା, ମତେ ଖା ।

ସଇଁ ସର୍ବେଶ୍ୱରର ହାତ ଧରି ଆଗକୁ ଚାଲିବାକୁ ଲାଗିଲା ।

ଜୀବନ, ଏପରି ଜୀବନରେ ଲାଭ କଣ ? ଯେଉଁ ଜୀବନରେ ବାରବାର ସ୍ୱାଦ ମିଳେନା, ଯେଉଁ ଜୀବନରେ ବାରବାର ସ୍ୱାର୍ଥକତା ଉପଲବ୍ଧି କର ହୁଏନା, ସେ ଜୀବନ ନ ଥିବା ସଙ୍ଗେ ସମାନ ।

ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠି ଆସିଲାଣି । ଶୀତ ଦିନର ଖରା । ତଥାପି ଖରାରେ ଠିଆ ହେଲେ ମୁଣ୍ଡ ବୁଲାଇ ଦେଉଛି । ଆଉ ଗଛକୁ ଆସିଲେ ଶୀତ ।

ସହର ବାହାରକୁ ଗୁଲି, ଗୁଲି ଆସିଛନ୍ତି ସେମାନେ । ନାଲି ରାସ୍ତା ପ୍ରାୟ ନିର୍ଜନ । ଗୋଟିଏ ଗଛ ମୂଳେ ପ୍ରତିମା ଆଉ ସୁରେଶ ବସିଲେ । ପ୍ରତିମା କହିଲା, କୁଆଡ଼େ ଯାଉଛ ସୁରେଶ ?

ରବି କହିଲା, ଯାଉଛି ଅସୀମର ପଥରେ···ସେ କିଛି ଆଗକୁ ଯାଇ ପଛକୁ ଚାହିଁଲା, ପ୍ରତିମା ଆଉ ସୁରେଶ ଗୋଟିଏ ଗଛମୂଳେ ବସି ଯାଇଛନ୍ତି । ପୁଣି ପଛକୁ ଫେରିଲା ସେମାନଙ୍କ ପାଖକୁ ଆସିବା ପାଇଁ । ସୁରେଶଙ୍କୁ ପ୍ରତିମା ଅଖା ଖଣ୍ଡିକ ପକାଇ ଦେଇ ଗଛମୂଳେ ଶୁଆଇ ଦେଇଛି ।

ସେ ପ୍ରତିମା ଆଗକୁ ଆସି କହିଲା, କେବେ ଭାବି ଥିଲ ପର ଏପରି ସମୟ ଆସିବ ବୋଲି ? କେବେ କଳ୍ପନା କରିଥିଲ ତମ ଆଦରର ଝିଅ ଦେବୀଙ୍କ ଦେହ କ୍ଷୀଣ ଅଖା ଉପରେ ଶୀତରେ ଥରରେ ଏମିତ ଫୁଙ୍ଗା ହୋଇ ଗଛ ମୂଳେ ପଡ଼ିବ ବୋଲି ? ହୁଏତ କାହିଁକି, ନିଶ୍ଚୟ ନୁହେଁ । ଏଇଠିତ ରହିଛି ଜୀବନର ଅସ୍ଥିର୍ଯ୍ୟ । ମଣିଷ ଯାହା ଭାବି ନ ଥାଏ, ତା ଜୀବନରେ ତାହା ଘଟେ, ଆଉ ଯାହା ଭାବିଥାଏ ଘଟିବ ବୋଲି, ତାହା କେଉଁ ଆଡ଼େ ଉଭାଇ ଯାଏ । ପ୍ରତିମା ଦୂରକୁ ଅନାଇ କଣ ଭାବୁଥିଲା ବୋଧହୁଏ । ସେ

ବାଲ୍ଟି ଉପୁଡ଼ି ଦେଇଛି । ସଞ୍ଜି କହୁଥାଏ ଲଟିଲ—ଗଛ, ତମେ ଏତେ ଭାବ କଣ ? ହଁ, ମୁଁ ଜାଣେ ବୁଝୁଛି ଅମର ଜୀବନରେ ଦୁଃଖ ହୋଇଛି, ତଥାପି ଭାବିଲେ କଣ ଆଉ ଦୁଃଖ ଭୁଲିଯିବ ? ତାଠାରୁ ବରଂ ହସ, ଖେଳ, ଆନନ୍ଦ କର । ଦେଇ ମୋ ଆଡ଼କୁ ଅନାଇଲ ମୁଁ କିପରି ହସୁଛି ହାଃ—ହାଃ—ହାଃ···

ପ୍ରତିମା ତଥାପି ଚୁପ ରହୁଥିଲା ଆରପାଖେ ଥିବା ଧାନ-କ୍ଷେତ ଆଡ଼କୁ ଚାହିଁଥାଏ । ଦୁଃଖ-ଜୀବନରେ ଦୁଃଖକୁ ଭାବି ଭାବିଲେ ଦୁଃଖ ବଢ଼େ । କିନ୍ତୁ ଦୁଃଖ ଯେତେବେଳେ ଦେହରେ ସବୁ ଅଙ୍ଗରେ ମନରେ ଚିନ୍ତାରେ ଭାବରେ ସବୁଠାରେ ରହୁଛି ସେତେବେଳେ ତାକୁ ଭୁଲି ହେବ କିପରି ? ସେ ଜାଣେ ତ ଭୁଲିପାରିବନି ଦୁଃଖକୁ ଆଉ କହୁଛି ପ୍ରତିମାକୁ ଭୁଲିଯିବାକୁ ।

ଏଇ ସମୟରେ ଜଣେ ଲୋକ ସାଇକେଲରେ ସେଇ ବାଟେ ଯାଉ ଯାଉ ପ୍ରତିମା ଉପରେ ତାର ଦୃଷ୍ଟି ପଡ଼ିଗଲା । ସାଇକେଲରୁ ଓହ୍ଲାଇ ଲୋକଟି ସଞ୍ଜି ପାଖକୁ ଆସି କହିଲା, ଆଜ୍ଞା, ଦବୁ ଏ ଲୋକଟାକୁ ?···ପ୍ରତିମା ଆଡ଼େ ହାତ ଦେଖାଇଲା ।

ସଞ୍ଜି କହିଲା, ହେବ ଯେ, କଣ କରିବୁ ତାକୁ ନେଇ ? ବୁଢ଼ୀଟେ ।

ଲୋକଟି ହସିଲା । ତା କାନରେ ଚୁପ ଚୁପ କରି କହିଲା, ନାଇ ଖାଇବାକୁ ନ ପାଇ ସେମିତି ହୋଇ ଯାଇଛନି, ଖାଇବାକୁ ପାଇଲେ ବେଶ ବାଢ଼ିଯିବ ଯେ । ବେଶ କାମକରି ପାରିବ ସେ । ଦବୁ ? ରୁକ୍ମିଣୀ ଘୋଡ଼ାଏ ଦରକାର ଥିଲା··

ସଞ୍ଜି ପଚାରିଲା, ଅଚ୍ଛା କୁଆଡ଼ୁ ନବୁକା ?

ଲୋକଟି ହସି ହସି କହିଲା, ମା'ଙ୍କୁ ଯେତେବେଳେ ନେବ ଆଉ ତୁମକୁ ନେବନାହିଁ ?

ମତେ କଣ ଦବୁ ?

ଲୋକଟି ଗଛମୂଳେ ସାଇକେଲଟା ଆଉଜାଇ ଦେଇ ପଗଳି ପାଖକୁ ଆସି କହିଲା, କେତେ ନେଲେ ଦବୁ ? ପଗଳି ଚୁପ ରହିଲା । ଲୋକଟା ପକେଟରୁ ପାଞ୍ଚଟଙ୍କା ବାହାର କରି ଦେଖାଇଲା, ମୋ ପାଖରେ ତ ରେଜା ନାହିଁ—ଏ ପାଞ୍ଚଟଙ୍କିଆ ନୋଟ ଖଣ୍ଡିଏ ଅଛି ।

ପଗଳି ଖେଁ ଖେଁ ହୋଇ ହସି ଉଠିଲା । ଗୋଟାଏ ମଣିଷ ଆଉ ଗୋଟାଏ ଛୁଆର ଦାମ ପାଞ୍ଚ ଟଙ୍କାବି ନୁହେଁ, ହାଃ-ହାଃ-ହାଃ···

ଲୋକଟା ତାର ହସରେ ଟିକିଏ ଚିଡ଼ିଗଲା, ନାହିଁ ଆଉ କେତେ ହବ ? ସେ କଣ ତୋର କି ? କେଉଁଠୁ ଗିଲେଇ ଆଣିଚୁ । ତାକୁ ଖାଇବାକୁ ଦେଇ ପାରୁନୁ ଯେ ତାର ଅବସ୍ଥା କଣ ହେଲାଣି ଦେଖିଲୁ । ଆହା-ହା ଚୁ, ଚୁ; ବାହା ଘରୁ ଆସିଚି···

ପଗଳି ହସି ହସି କହିଲା, ଭାରି ତ ସହାନୁଭୂତି ତମର ! ପର ଦୁଃଖରେ ତମ ଆଖିରୁ ଲୁହ ଗଡ଼ି ଆସୁଚି ! ତାହେଁ ମୋ ଆଖିରୁ ତ ଲୁହ ଗଡ଼ୁନାହିଁ ? ମୁଁ ତ ସବୁ ଦିନେ ତାକୁ ଦେଖୁଚି, ତଥାପି ତାହାଙ୍କ ଭାବ ମାଡୁନାହିଁ ତ !

ଲୋକ ଜଣକ କହିଲା, ତୁ ପାପୀ, ତୁ ମୂର୍ଖ, ତୁ ଲୁଆଡ଼ୁ ଅନ୍ୟକୁ ଦୟା କରିବୁ ? ତୁ କାଟ ତୁ ପାପୀ, ତୁ ମୂର୍ଖ !

ପଗଳି କହିଲା, ଓଃ ତମେ ଭାରି ଦୟା-ବନ୍ତ ନା ! ସେଇଥି ପାଇଁ ତାର ଦୁଃଖ ଦେଖି ସହି ପାରୁନା ପରା ! କାହିଁକି, ମୋର କଣ

ଅବସ୍ଥା ଖରାପ ନୁହେଁ ? ମତେ କାହିଁକି ଦୟା ଦେଖାଇଲ ନାହିଁ ? ଅଳ୍ପ ଯାଅ, ଅଳ୍ପ ଦିନଟା ଯାଉ, ଭଲ ହୋଇଯିବ—ମୁଁ ତ ଏଇଠି ଥିବି, ଯାଅ ।

ଲୋକଟି କହିଲା—ହଁ, ଏଇଠି ଥିବୁ, ମୁଁ ଭଲ ଅସି ସୁବିଧା କରି ନେଇଯିବି, ସେଇତ ଛାଡ଼ିଲା ! ଲୋକଟି ସାଇକେଲରେ ଚଢ଼ି ଚାଲି ଯାଉଥିଲା, ସେ ତାକୁ ପଛରୁ ଡାକି କହିଲା—ହେ ଭାଇ, ଶୁଣିଯାଅ । ଲୋକଟି ପୁଣି ପଣି ପାଖକୁ ଆସିଲା ।

ପଣି କହିଲା, ଚାରଣା ପଇସା ଦେଇଥିବ କି ? ଲୋକଟି ସଙ୍ଗେ ସଙ୍ଗେ ପକେଟରୁ ଚାରଣା ପଇସା ବାହାର କରି ହାତକୁ ବଢ଼ାଇଦେଲା ।

ବିଡ଼ି ପିଉ ଅଛ କି ? ଖଣ୍ଡେ ଦେଲ ।

ଲୋକଟି ତା ହାତରେ ବିଡ଼ି ଖଣ୍ଡେ ଦେଲା । ବିଡ଼ି ଖଣ୍ଡକରେ ନିଆଁ ଧରିଲା । ଲୋକଟି ସାଇକେଲରେ ଚାଲିଗଲା ।

ଚାହିଁଲା ପ୍ରତିମା ଆଡ଼େ । ପ୍ରତିମା ପୂର୍ବପରି ବସି ରହିଛି ଗଛ ମୂଳେ । ଏହା ଭିତରେ କାହିଁ ସେହି ଯୌବନ ?

ଦଳେ ଭିକାରୀ କଥାବାର୍ତ୍ତା ହୋଇ ଯାଉଥିଲେ । କେଉଁଠି ଗୋଟିଏ ଭୋଜି ହେଉଛି । ସେ ପ୍ରତିମାର ହାତ ଧରି ଉଠାଇଦେଲା । ପ୍ରତିମା ସବୁଙ୍କୁ ଦେଖି ଚଲା । ସେମାନେ ଚାଲିଲେ ସେହି ଭିକାରୀ ପଛେ ପଛେ । ସେମାନେ ତ ଭିକାରୀ ! ଭିକାରୀ ଆଉ ସେମାନଙ୍କ ଭିତରେ ପ୍ରଭେଦ କଣ ?

ଶେଷରେ ଯାଇଁ ପହଞ୍ଚିଲେ ଗୋଟାଏ ଭଙ୍ଗା ସାହିଲା କୋଠା ଆଗରେ । ଘର ଆଗରେ ଥୁଆହୋଇଛି କେତେପ୍ରକାର ମଟର ଗାଡ଼ି ।

କୁଆଡ଼େ ଜଣେ ବିଖ୍ୟାତ ନେତାଙ୍କୁ ଚୁ ଖୋଜା ଦିଆ ହେଉଛି । ଚୁ ଖୋଜ ହେଉଛନ୍ତି ସେଠ କିଶନଦୟାଲ ଇଦର ଚୁପ ! ସେ ଘର ଉପରକୁ ଚାହିଁଲା, ଚୋଠା ବଢ଼ି ବଢ଼ି ଚାଲିଛି । ଆକାଶ ଯାଏ ବଢ଼ି ଚାଲିଥିବ ଆଉ କେତେ ଦିନ ଯାଏ କିଏ ଜାଣେ ? ଏ ବଢ଼ିବାର ହୁଏତ ଶେଷ ନାହିଁ ।

ଉପରୁ ଭାସିଆସୁଛି ମାଂସ ଝୋଳର ଗନ୍ଧ । ଆଉ ସବୁ କେତେ ସୁସ୍ୱାଦୁ ଖାଇବା ଜିନିଷର ଗନ୍ଧ । ଏ ଗନ୍ଧ ଭୋକ ବଢ଼ାଇ ଦେଲା ଯେମିତି । ମଞ୍ଚରୁ ସେଇ ତଳେ ଠିଆ ହୋଇଛନ୍ତି ଭିକାରୀ ସବୁ । ସତେ ଯେପରି ତାଙ୍କର ସେଇ ବିଖ୍ୟାତ ନେତା ଶେଷରେ ଭାଙ୍ଗି ହାତରେ ଦେଇଦେବେ କିଛି ତାଙ୍କ ଖାଇବା ଜିନିଷରୁ ! ଉପର ମହଲାର ବାରଣ୍ଡାକୁ ନେତା ଆଉ ଅନ୍ୟାନ୍ୟମାନେ ଖାଇସାରି ହାତ ଧୋଇବା ପାଇଁ ଆସିଲେ । ରୁପା ଟବ୍‌ରୁ ସୁନା ପାତ୍ରରେ ପାଣି ନେଇ ସାବୁନରେ ହାତ ଧୋଇଲେ । ତା’ର କିଛି ସମୟ ପରେ ଜଣ ଜଣ ହୋଇ ତଳକୁ ଖସିଲେ । ଜଣକ ବେକରେ ଥୋଡ଼ାଏ ଫୁଲ ମାଳ ପଡ଼ିଥାଏ । ସେ ଜଣକ ବୋଧହୁଏ ଅଜ୍ଞର ଅତିଥି । ମଞ୍ଚର ଚାରିପାଖ ଗୋଟି ଗୋଟି ହୋଇ ଚାଲିଗଲେ । ଭିକାରୀ ଦଳ ନିରାଶ ହୋଇ ଗୋଟିକ ପଛରେ ଗୋଟିଏ ଫେରିଲେ । ପ୍ରତିମାର ପଣତକୁ ଭିଡ଼ି ଦେଇ ସଚି କହିଲା, ଦେଖୁଛ କିଏ ! ସେମାନେ ଗଣ, ସେମାନଙ୍କର ଯୁଗ—ଆମେ ତ ଗଣ ନୁହଁ, ଆମର ତ ଯୁଗ ନୁହେଁ—

ତାପରେ ଗୋଟିଏ ଗୋଟିଏ ହୋଇ ରାସ୍ତାରେ ଆସିଲେ ସେମାନେ । ରାସ୍ତା କଡ଼ର ଗୋଟାଏ ଦଶ୍ ଚାଲନ୍ତି ଦୋକାନରୁ ଚୁରଣର ଦଶ୍ ଆଣିଲା ସଚି । ନିଜ ପାଇଁ ଛ’ଟା ରଖି ବାକି ୯ ଟା

ପ୍ରତିମା ହାତକୁ ବଢାଇ ଦେଲା । ପ୍ରତିମା ପଚାରିଲା, ପଇସା ତ
ନ ଥିଲା, ପଇସା କେଉଁଠୁ ଆଣିଲ ? ସେ କିଛି ଉତ୍ତର ନ ଦେଇ
ଖାଇବାକୁ ଲାଗିଲା । ପ୍ରତିମା ଆଶ୍ଚର୍ଯ୍ୟରେ ପଚାରିଲା, ଗୋଟାଏ କଥା
କହୁଚେ ତମକୁ ଶୁଣିବ ନାହିଁ କି ? ପଚାରୁଛି ପରା ପଇସା, କେଉଁଠୁ
ଆଣିଲ ?

ପଇସା, ପଇସା ମୁଁ ଆକାଶରୁ ଆଣିଲି । ମୁଁ ଯୋଉଠୁ ଆଣିଲି,
ସେଥିରୁ ତମେ କଣ ପାଇବ ?

ସରି ବସି ଖାଉ ଖାଉ ଭାବିଲା, ଯଦି ସେ ଲୋକଟାକୁ ଆଉ
ମିଛ କହି ନ ଥାନ୍ତା ହୁଏତ ଏତେ ମିଳି ନ ଥାନ୍ତା । କହିବା ଲୋକ
ଯଦି ମିଛକୁ ପ୍ରୟୋଗ କରିପାଏ ତେବେ ଲାଭ କଣ ? ବାପରେ
ହୁଏତ ସେ ଲୋକଟା ସେ ଗଛ ମୂଳ ଆଡ଼େ ଖୋଜୁଥିବ, ନ [illegible]
ଅଭିଶାପ ଦେଇ ଚାଲିଯିବ । ଯାଉ, ଲାଭ କଣ ? କେତେଟା ପ୍ରାଣୀ
ଅନ୍ତତଃ ଗୋଟାଏ ବେଳ ବଞ୍ଚିଗଲେ ତ ?

ପ୍ରତିମା କହିଲା, ଆଜି ଏ ସୁବର୍ଣ୍ଣ ଭେଟିଟି ରଖିବାର
ବନ୍ଦୋବସ୍ତ କରୁଚ ? ସରି କହିଲା, ବନ୍ଦୋବସ୍ତ ଆଉ କଣ ?
ଏମିତି ବୋଉ ବାରଣ୍ଡାରେ ପଡ଼ିଯିବା । ମୁଣ୍ଡ ହଲାଇ ପ୍ରତିମା
କହିଲା, ଉଃ ଭାଲ ଯୋଉ ଶୀତ, ପିଲାଟା ଏ ଶୀତରେ ଆଉ
ବଞ୍ଚିବ ? ନା, ଆଜି ଭେଟିଟି ଦେଖ ।

ସରି ଗୋଟାଏ ପାର୍କ ଦେଖି ତା ଭିତରକୁ ପଶିଗଲେ । ପ୍ରତିମା
ତା ପଛେ ପଛେ । ଗୋଟାଏ ବେଞ୍ଚ ଉପରେ ବସିଲେ । ଚାରିଆଡ଼କୁ
ଅନାଇଲେ । ଚାରିଆଡ଼େ ଆକାଶକୁ ଛୁଇଁଲା ମଣିଷ ଗଢା ଘର ।
ମଣିଷର ପ୍ରକୃତ ବୁଦ୍ଧିରେ ଅଭିଯାନ ଚାଲିଚି । ଧନକୁ ଧନ ଭାଇ
ଭଉଣୀ ଚାଲିଛି । ଏହି ପ୍ରକୃତିର ବି ସେଇ ଅନୁପାତରେ ସମ୍ବନ୍ଧ

ଚାଲିଛି । କିନ୍ତୁ ମନୁଷ୍ୟର ଏଇ ଅଦମ, ଅତି ପୁରାତନ ସମସ୍ୟା, ସଂଘର୍ଷ ପ୍ରକୃତି ବିରୁଦ୍ଧରେ—ଏଇ ଜୈବିକ ବିରୁଦ୍ଧରେ ତାହା ଆଜଯାଏ କଣ ସମାଧାନ ହେଲା ? ପ୍ରକୃତି ବିରୁଦ୍ଧରେ ମଣିଷ ଏଇ ଅତି ପୁରାତନ ସଂଗ୍ରାମରେ ହୁଏତ ହାରି ଯାଇଛି !

ପଶ୍ଚିମ ଆକାଶରେ, ମଣିଷ ତିଆରି ପ୍ରାସାଦର ଅନ୍ତରାଳେ ସୂର୍ଯ୍ୟ ଅସ୍ତ ଯାଉଛି । ପଶ୍ଚିମ ଆକାଶର କେଉଁ ଅଞ୍ଚଳରେ ହୁଏ ତ ମଣିଷ ଆଉ ପ୍ରକୃତିର ବିକ୍ରାନ୍ତ ସଂଗ୍ରାମ ଚାଲିଛି । ବହୁତ ଦିନ ପରେ ସଞ୍ଜିବ ଗୀତ ବୋଲିବା ପାଇଁ ଇଚ୍ଛା ହେଲା । କି ଗୀତ ସେ ବୋଲିବ ? ପ୍ରେମ ଗୀତ ? ତାଠାରୁ ବରଂ ଯଦି ତାହାର ପ୍ରଶଂସା ଗୀତ ଗାଇ ପାରନ୍ତା, ହୁଏତ ସେ କିଛି ଟଙ୍କା ଦିଅନ୍ତା — ଆଉ କେତେଦିନ ହୁଏ ତ ଚଳି ଯାଇ ହୁଅନ୍ତା ନିର୍ବିଘ୍ନରେ ।

ପରେ ଦୁଇଥର କାଶି, ସେ ଆରମ୍ଭ କଲା—

ଯଦି ଦୁଆରେ ଆସିଲ କମଳାକ୍ଷ
ଆଖି ଲେଉଟି ଗଲା ସେ ଛୁଇଁ
ଆଜି ଭିତରେ ବାହାରେ ମୋର
ଭୋକ, ତମରେ ପାଇଛି ମୁହିଁ
ଶିରରେ ଛୁଟିବ ଯେବେ ରକତ ସୁଅ
ଶୁଣେ ତାହାର ମଧ୍ୟେ ନିଶ୍ୱାସ ଲଅ
ତମେ ଆସିବ ଆସିବ ବାହାର ହେ
ମୁହିଁ ମରିବି ଶରଣ ପାଇ···

ଗୀତ ବୋଲି ସାରିଲା ସଞ୍ଜି । ହଠାତ୍ ପଛରୁ ଜଣେ କିଏ କହିଲା···ବାଃ, ବେଶ୍ ତ ଗାଇପାର । ସେ ଅନାଇଲା । ଆଧୁନିକ ଶିକ୍ଷିତ ଯୁବକ ପରି ଜଣା ଯାଉଛି । ତାକୁ ଡାକି କହିଲା, ଏଇ

ବେଞ୍ଚରେ ବସନ୍ତୁ । ଯୁବକଟି ଟିକିଏ କେମିତି ସଙ୍କୋଚ ବୋଧକଲା ପରି ଲାଗିଲା । ସେ କହିଲା, ଓଃ ବୁଝିଲି ଗୋଟାଏ ଭଦ୍ର ସ୍ତ୍ରୀ ସଙ୍ଗେ ବସିବାକୁ ପୁଣି ଏକା ବେଞ୍ଚରେ ଖରାପ ଲାଗୁଛି ନା ? ଯୁବକଟି ଏଥର ବିନା ବାକ୍ୟ ବ୍ୟୟରେ ସେଇ ବେଞ୍ଚରେ ଗୋଟାଏ କଣକୁ ବସି ପଡ଼ିଲା ।

ସଚ୍ଚି କହିଲା, ଗୀତଟା ଆପଣଙ୍କୁ ବେଶ୍ ଭଲ ଲାଗିଲା, ନୁହେଁ ?

ନିଶ୍ଚୟ, ତମର କଣ୍ଠ ତ ବେଶ ଭଲ ଅଛି । କିଏ ଏଇ ଗୀତଟା ଶିଖେଇ ଥିଲା ?

ସେ ହସିଲା, କହିଲା, ନାଇ ମନକୁ ଶିଖିଥିଲି ।

ବୁଝିଲି, କିନ୍ତୁ ଏ ଗୀତଟା ପାଇଲ କେଉଁଠୁ ?

ମୁଁ ଏ ଗୀତଟା କରିଚି ବୋଲି ବିଶ୍ୱାସ ହେଉନାହିଁ, ନୁହେଁ ?

ଯୁବକଟି ସେମିତ ବିଶ୍ୱାସ କଲାନାହିଁ । ସନ୍ଦେହ ଆଖିରେ ଅନେଇଲା ସେ ତାକୁ । କିଛି ସମୟ ପରେ ପଚାରିଲା, ତମ ଘର କେଉଁଠି ?

ମୋର ଘର ? ମୋ ଘର କଥା ସାରିବା ପରେ ପଚାରିବ, ନାଁ କଣ, କଣ ପାଠ କରିଚ ଏଠିକି ତାହିଁକି ଆସିଚ, ନୁହେଁ ? ମୁଁ ତ ଜଣେ ମଣିଷ, ଜଣେ ଭାରତୀୟ ମଧ୍ୟ । ଦରକାର କଣ ଜାଣିବାରେ ନାଁ ଗାଁ ପରିଚୟ ? ଭାରତୀୟ କହିଲେ କଣ ଯଥେଷ୍ଟ ନୁହେଁ ? ଶୁଣ, ମୁଁ, ଏଇ ପାଖରେ ବସିଚି ମୋର ସ୍ତ୍ରୀ, ଆଉ ମୋର ଝିଅ । ଆମର ଦୁଃଖ ଦେଖି ତମ ମନରେ କଣ ସହାନୁଭୂତି ଆସୁ ନାହିଁ ? ଆମେ ଗରିବ—ଖାଇବାକୁ ପାଉ ନାହୁଁ, ଏ କଥା ଶୁଣି କରି ମଧ୍ୟ ତମ ମନରେ ଦୟା ଆସୁ ନାହିଁ ? ଯଦି ମୁଁ କହନ୍ତି ମୁଁ ଓଡ଼ିଆ

ତାପରେ ଆପଣ ଯଦି ବ୍ରାହ୍ମଣ ହୋଇଥାନ୍ତି, ମୁଁ ଯଦି ଜଣେ ବ୍ରାହ୍ମଣ, ତେବେ ଆପଣ ହୁଏତ ଦୟା କରିବେ ।

ଯୁବକଟି କହିଲା, ନା ମୁଁ ଜାଣିବାକୁ ଚାହେଁ ତମେ କେଉଁଠୁ ଆସିଛ । କଥାବାର୍ତ୍ତାରୁ ଜଣାପଡ଼େ ତମେ ବଙ୍ଗାଳୀ ବୋଧହୁଏ ପୂର୍ବବଙ୍ଗରୁ ଆସିଛ ?

ଯତି କହିଲା, କେମିତି ଜାଣିଲ ?

ଜାଣିଲି କଥାବାର୍ତ୍ତାରୁ, ଆଜି କାଲି ଅନେକ ଆସୁଛନ୍ତି ପୂର୍ବ ବଙ୍ଗରୁ ।

ପୂର୍ବବଙ୍ଗୀୟମାନଙ୍କ ପାଇଁ ପଶ୍ଚିମ ବଙ୍ଗରେ ଆଉ ସ୍ଥାନ ନାହିଁ । ତେଣୁ ପଳାଇ ଆସୁଛନ୍ତି ସେମାନେ । ଅସମରେ ବି ଆଉ ଜାଗା ନାହିଁ ।

ପଶ୍ନର ପାରେ କି ତମେ ସେଠାରେ କଣ କରୁଥିଲ ?

ବେଶ ବଦ୍ରାମୀ ଆପଣ ଜାଣିଛନ୍ତି ତ ! ଓଁ, ମୋର ଯା ହେଲେ ପରିଚୟ ଦେବା ଆବଶ୍ୟକ । ଶୁଣ, ମୁଁ ଡାକ୍‌ବା କଲେଜରେ—

କଣ ପିଅନ, ନା କ୍ଲର୍କ, କସ୍ବମା ଥିଲ ନା ?

ନା ।

ତେବେ ?

ଥିଲି—ବେଶ ଏଭବି ।

ନା, କ'ଣ ଥିଲ ଜାଣିବାକୁ ଚାହେଁ ।

ଥିଲି ଅଧ୍ୟାପକ—ଇତିହାସ ଅଧ୍ୟାପକ

ଯୁବକଟି ଚମକି ପଡ଼ିଲା—ଏଁ !

ମିଛ ନୁହେଁ ସତ କହୁଛି ।

ତେବେ ଏ ଅବସ୍ଥା ଆପଣଙ୍କର କାହିଁକି ?

ସଇଁ ଚୁପ ରହିଲା ।

ଯୁବକଟି ଆଗ୍ରହରେ ପଚାରିଲା, ପଶ୍ଚିମବଙ୍ଗ ସରକାର କ'ଣ ଆପଣଙ୍କୁ କିଛି ପୋଷ୍ଟ ଦେଇ ପାରିଲାନି ?

ବର୍ତ୍ତମାନ ପୂର୍ବବଙ୍ଗରୁ ଏତେ ଅଧ୍ୟାପକ ଓ ଶିକ୍ଷକ ଭୁଲି ଆସିଛନ୍ତି ଯେ ସମସ୍ତଙ୍କୁ ଚାକିରୀ ଯୋଗାଇବା ଦୁଏତ ସମ୍ଭବ ନୁହେଁ । ତାପରେ ପୁଣି କେତେ ଜଣ ଶିକ୍ଷିତ ପଶ୍ଚିମ ବଙ୍ଗରେ ବେକାର ହୋଇ ବସିଛନ୍ତି ।

ସଇଁ ଚୁପ ରହିଲା । ସେ ମିଛ କହିବ । କଲିକତାରେ ଥିବାବେଳେ ଗୋଟିଏ କିରାଣୀ ଚାକିରୀ ସେ ପାଇଥିଲା, କିନ୍ତୁ କିରାଣୀ ଗିରି କରିବାକୁ ତାର କପାଳ ଇଚ୍ଛା ହେଲା ନାହିଁ । ସେ ଚାକିରୀକି ସେ ଗ୍ରହଣ କରି ନ ଥିଲା । ତା ପରେ ପଳାଇ ଆସିଥିଲା ଏଠାକୁ, ଏଠାରେ ଯଦି କୌଣସି ସୁବିଧା ଥାଏ ।

ଏଠିକି କେତେ ଦିନ ହେଲା ଆସିଲେଣି ?

କାଲିଠାରୁ ।

କେଉଁଠି ରହୁଛନ୍ତି—

ସବୁଠାରେ ।

ମାନେ ?

ମାନେ ଆଉ କଣ ହୋଇପାରେ ? ପାର୍କରେ, ହୋଟେଲ ବାରଣ୍ଡାରେ, ଗଛ ମୂଳେ । ଧର୍ମଶାଳାକୁ ଯାଇଥିଲି, ଭଦ୍ରାମୀ ବୋଲି ଘାଡ଼ ଧକ୍କା ଦେଲେ ।

ଯୁବକଟି କହିଲା, ଆହା କେତେ ଦୁରବସ୍ଥା ହେଲେ ଆପଣ ! ଆଗରୁ ଯଦି ମୁଁ ଜାଣି ପାରିଥାନ୍ତି !

ସଙ୍ଗି ଚୁପ୍ ରହିଲା । ଏପରି ସହାନୁଭୂତି ସେ ଅନେକ ଥର ଶୁଣିଛି । ଅନେକ ଜାଗାରେ ଅନେକ ଲୋକ ଠିକ୍ ଏହିପରି ଦୟା ଦେଖେଇଛନ୍ତି । କିନ୍ତୁ ଏଇ ଲୋକଟିର କଥାରେ କିପରି ଦରଦ ରହିଥିଲା ପରି ଜଣା ପଡ଼ୁଛି । ହୁଏତ ଏ ଜଣକ ସେମାନଙ୍କଠାରୁ ଭିନ୍ନ, ଅଲଗା । ହୁଏତ ଏହାର ହୃଦୟରେ ରହିଛି ମଣିଷ ପ୍ରତି ପ୍ରକୃତ ସହାନୁଭୂତି । ସଙ୍ଗି ଆଖିରୁ ଗଡ଼ି ଆସିଲା ଦୁଇଧାର ଲୁହ । ଝାପ୍ସା ହୋଇ ଆସିଲା । କେହି ହୁଏତ ତାର ଲୁହ ଦେଖି ପାରିଲେନି । କାମିଜରେ ଆଖିକୁ ପୋଛି ଦେଲା । ବୁକୁ ଭିତରୁ କେତେ ବ୍ୟଥା,— କେତେ ବେଦନା ଗୁମରି କାନ୍ଦୁଥିଲା ଯେପରି ।

ଚାଲ —

ସଙ୍ଗି ପଚାରିଲା, କେଉଁ ଆଡ଼େ ?

ମୋ ପାଖେ ଚାଲନ୍ତୁ ନା —

କେଉଁ ଆଡ଼େ, କୋଠା ଘରକୁ ? ନା, ତା ଅପେକ୍ଷା ବରଂ ଭଲ ଏଇ ଖୋଲା ଜାଗା । ଦେହ ଖୋଲା ଥିଲେ, ଖୋଲା ଜାଗାରେ ରହିଲେ କିଛି ଜଣା ପଡ଼େନି । ଦୁଃଖ କଷ୍ଟ କମ ଜଣା ପଡ଼େନି । ଆପଣଙ୍କ ଦୟା ପାଇଁ ଧନ୍ୟବାଦ୍ । ଆପଣ ଚାଲିଯାନ୍ତୁ ।

ସଙ୍ଗିର ହାତ ଧରି ଯୁବକଟି ଭିଡ଼ିଲା ।

ସେ ଚାଲିଲା, ତାପଛେ ପଛେ ପ୍ରତିମା । ପ୍ରତିମା କୋଳରେ ସରୋଜ ।

ହୃଦୟରୁ ଭାସି ଆସୁଛି ବେଦନାର୍ତ୍ତ ସଂଗୀତ । ପ୍ରେମର ଗୀତ । କେଉଁ ବିରହିଣୀ ତାର ପ୍ରିୟ ପାଇଁ ବ୍ୟାକୁଳ ହୋଇ ଉଠିଛି । ସେ ସ୍ୱପ୍ନରେ, ଜାଗରଣରେ ସବୁବେଳେ ତାର ସ୍ୱପ୍ନ ଖାଲି ଦେଖୁଛି । ଜଳ ସ୍ଥଳ ଆକାଶରେ ତା ପ୍ରିୟର ଛବି ଅଙ୍କା ହୋଇଛି ଯେପରି । ଗୃହଦ୍ୱାରରୁ ପ୍ରିୟର କଣ୍ଠସ୍ୱର ଭାସି ଆସୁଛି । ସିଏ ହସି ଉଠିଲା । ତାପରେ ଚୁପ୍ ହୋଇ ଗୃହଅଙ୍ଗନକୁ ଚାହିଁଲା । ସବୁ ଭିତର ଅନ୍ଧାର ହୋଇଛି । ନିର୍ଜନ, କେହି ନାହାନ୍ତି । ପ୍ରତିମା ସରୋଜଙ୍କୁ ସାଙ୍ଗରେ ନେଇ ପାରିଛି । ପ୍ରତିମା ରୋଷେଇ କରୁଥିବ । ସରୋଜଙ୍କୁ ସେଇ ରୋଷେଇ ଘରେ ତଳେ ଛିଣ୍ଡା କନା ଖଣ୍ଡେ ପାରି ଶୁଆଇ ଦେଇଥିବ । ସେଦିନ ପାର୍ଟିରୁ ଯେଉଁ ବାବୁ ଜଣକ ତାଙ୍କୁ ସାଙ୍ଗରେ ଆଣିଥିଲେ, ତାଙ୍କ ନାଁ ଶ୍ରୀ ପ୍ରଫୁଲ୍ଲ କୁମାର ପଟ୍ଟନାୟକ । ଡାକ ନାମ ମଣ୍ଟୁ ବାବୁ । ନିକଟରେ ଇତିହାସରେ ଏମ୍.ଏ. କୃତିତ୍ୱର ସହ ପାଶ୍ କରି ନ ଥିଲେ ବି, ପାଶ କରିଛନ୍ତି । କୌଣସି ମତେ ସରକାରୀ କଲେଜ୍‌ର ଅଧ୍ୟାପକ ହୋଇଛନ୍ତି । ବହୁତ କଷ୍ଟରେ କୁଆଡ଼େ ଅଧ୍ୟାପକ ହେଲେ । ତାଙ୍କ ବାପା ଶ୍ରୀ ନୀହାର କୁମାରଙ୍କ ଅକ୍ଳାନ୍ତ ଚେଷ୍ଟାର ଫଳ । ତେଣିକି ଏଠାରେ ଅଉ ଅଧ୍ୟାପକ ପଦ ଯେ ମିଳିବ ନାହିଁ, ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ତଥାପି ଆଶା ଆଉ ଅପେକ୍ଷା । ଏହି ଅପେକ୍ଷାରେ ହିଁ ବିଶିଷ୍ଟ ସାନ୍ତ୍ୱନା !

ମଣ୍ଟୁ ବାବୁ ଦୟାର ଅବତାର । ତା ନ ହେଲେ ଗୋଟିଏ ପଲାତକ ଭିକାରୀ ଆଉ ତାର ସ୍ତ୍ରୀ ପିଲାଙ୍କୁ ଆଣି କଣ ତାଙ୍କ ଘରେ ରଖାଇଥାନ୍ତେ ? ହୋଇପାରେ ପ୍ରତିମା ରୋଷେଇ କରୁଛି ତାଙ୍କ ଘରେ । ହେଲା କଣ ? ଏପରି ଉପକାରୀ ପୁରୁଷଙ୍କର ପଦ ଗୋଲାମି

ଖଟିବାକୁ ହୁଏ ତେବେ ରକ୍ତ ଓ କାଳୁ ଅଂଶରେ ସୁଝିଯିବ ! ମଣ୍ଟୁ ବାବୁ ନୂଆ ହୋଇ ବାହା ହୋଇଛନ୍ତି । ମଣ୍ଟୁ ବାବୁଙ୍କ ସ୍ତ୍ରୀ ସୁମିତ୍ରା ବୟସରେ ଖୁବ୍ ଛୋଟ । ବାପା ମା'ଙ୍କର ଏକମାତ୍ର ଝିଅ । ଏଇଠାରୁ ହୋଇଯିବ ଘର ମାଲିକବ କିପରି ?

ରେଡ଼ିଓରୁ ଭାସି ଆସୁଛି ଭାୟୋଲିନ୍‌ର ଗୋଟିଏ କରୁଣ ଆଲାପ । ଜୀବନଟା ଠିକ୍ ଭାୟୋଲିନ୍‌ର ଏଇ କରୁଣ ଆଲାପ ପରି କରୁଣ, କିନ୍ତୁ ତା'ପରି ସୁନ୍ଦର ଓ ମଧୁର ନୁହେଁ ।

ଘର ଭିତରେ ଜମି ରହିଛି ଅନ୍ଧକାର । ଏଇ ଅନ୍ଧକାର ଭିତରେ କେତେ କଥା କହିଯାଇ ପାରେ । ମନୁଷ୍ୟ ହୃଦୟ ପରି ଭୀଷଣ କାହାଣୀ ନିର୍ଜନରେ କହିଯାଇ ପାରେ ।

ତାହାର ସ୍ମୃତିରସ୍ମରଣୀୟ ଦିବସ ଠିକ୍ ଆଜିକୁ ତିନିବର୍ଷ ହେଲା । ବାପାଙ୍କର ସେ ମଧୁର ସ୍ମୃତି ଆସି ଅତୀତର ବୁକୁ ଭେଦ କରି···ମା'ଙ୍କର ଆଶ୍ୱାସନା, କେତେ ଆଦର, କେତେ ସୋହାଗ, ଏତେ ଦିନ ପରେ ଯେପରି ଅପୂର୍ଣ୍ଣ ରହିଛି । ମା ବାପା-ଙ୍କର ସ୍ମୃତି ଦୁଇଟି ଜୀବନ ସ୍ମୃତିପଟରୁ ଲିଭିବ ନାହିଁ ।

ଭଉଣୀର ସ୍ମୃତି । ଅତୀତର ଠିକ୍ ଏମିତି ଦିନରେ ଗୋଟିଏ ନୂଆ ଗୀତ କେଉଁଠୁ ଶିଖିଆସି ଗାଇଥିଲା । ଗାଇସାରି ପଚାରିଥିଲା, ଭାଇ ଗୀତଟା କେମିତି ଲାଗିଲା ? ମତେ ପରା କହୁଥିଲ ଏସରାଜଟେ ଦେବା ପାଇଁ ? ଏଥର ମୋ ଜନ୍ମଦିନକୁ ଦେବନି ?

ସେ କହୁଥିଲା, ନିଶ୍ଚୟ ଏ ଦଶହରାକୁ ଆଣି ଦେବି···

ତା ପରେ ଥ୍ରା ଭିତରେ ତିନୋଟି ଦଶହରା ଅତୀତରେ ପରିଣତ ହେଲାଣି । ଆଉ କେତୋଟି ଦଶହରା ବହିଯିବ ସମୟର

[illegible] ସ୍ରୋତରେ, କିନ୍ତୁ ତାଙ୍କ ଅନୁରୋଧ କଣ ରକ୍ଷା ହୋଇ ପାରିବ ?

ବୁଝିଲୁ, କେତେ ବୁଝିଲୁ, ତଥାପି ଅସ୍ଫୁଟ ତାହାର ଆହ୍ୱାନ—ହେ ପଥିକ, ହେ ଦିଗହରା ପଥିକ, ଫେରିଆସ—ଫେରିଆସ··· । କେଉଁଠାରୁ ଫେରି ଯିବ ସେ ?କେଉଁଠାରୁ ଅସ୍ଫୁଟ ଏ ଆହ୍ୱାନ ?

ସରି ବାବୁ !

ଝରକା ତଳରୁ ମୁହଁ ଫେରାଇ ଅନାଇଲା ଦୁଆର ମୁହଁକୁ । ଅନ୍ଧାରରେ ବାରି ହେଉନାହିଁ ।

ସରି ବାବୁ ! ଘରଟା ଭାରି ଅନ୍ଧାର ହୋଇଛି । ଆସ ମୁଁ ଲାଇଟ ଜାଳେ ?

ମଣ୍ଟୁ ବାବୁ ।

ଅନ୍ଧାରରେ ଲୁଚିଥାଏ ପୃଥିବୀର ଆବର୍ଜନା । ସେ କଣ ଆବର୍ଜନା ନୁହେଁ ? ସେଥିପାଇଁ ହୁଏତ ସେ ଅନ୍ଧାରରେ ଲୁଚିଛି ।

କିଛି ସମୟ ପରେ ମଣ୍ଟୁବାବୁ ଫେରି ଆସି କହିଲେ, ଆଚ୍ଛା, ସରି ବାବୁ ଆସନ୍ତୁନା ମୋ କୋଠରୀକୁ । ସେଠି ବସି ଗପସପ କରିବା—। ସରି ଗଲା ମଣ୍ଟୁ ବାବୁଙ୍କ ସାଙ୍ଗରେ ଉପର ମହଲାକୁ ।

କୋଠରୀ ଭିତରେ ପଡ଼ିଛି ଇଲେକ୍‌ଟ୍ରିକ୍ ବଲବ୍‌ର ତୀବ୍ର ଆଲୋକ । ମଣ୍ଟୁବାବୁ ସେ ଲାଇଟଟା ଲିଭାଇଦେଇ ଆଉ ଗୋଟିଏ ଜଳାଇ ଦେଲେ । ସବୁଜ ଆଲୋକରେ ଘର ହସି ଉଠିଲା । ମନେ ହେଲା ଯେପରି କେଉଁ ମାୟାପୁରୀର ଏ ଘରଟି ! ଘରର ସେ କଣକୁ ପଡ଼ିଛି ଗୋଟାଏ ଟେବୁଲ । ଟେବୁଲ ଉପରେ ଝଲଝଲ

ଜନାର ଟେବୁଲ୍ କ୍ଲଥ । ତା ଉପରେ ଗ୍ରୀସୀୟ ଅର୍ଟ ଅନୁଯାୟୀ ଭଙ୍ଗୀରେ ହୋଇଥିବା ନାରୀର ନଗ୍ନ ମୂର୍ତ୍ତି । ବହୁଗୁଡ଼ାଏ ଅଶିଷ୍ଟ ଭାବରେ ଟେବୁଲ ଉପରେ ପଡ଼ିଛି । ତା ପାଖରେ ଦୁଇଟି ବଡ଼ ବଡ଼ ଆଲମାରୀରେ ବହୁତ ବହି—ଇତିହାସ ବୋଧହୁଏ, ସଜହୋଇ ରଖାଯାଇଛି । ହୁଏତ କେଉଁଦିନ ଭୁଲରେ ସୁଦ୍ଧା ଫିଟିନାହିଁ । ଦେଖିବା ଦରକାର ନାହିଁ ହୁଏତ ! ଅରପାଖ କାନ୍ଥ ଆଡ଼କୁ ଗୋଟିଏ ଗ୍ଲାସ୍ ଗୋଲ ଟେବୁଲ । ଟେବୁଲ ଉପରେ ଆସ୍ ଟ୍ରେ । ତା ପାଖକୁ ରୁ ଖାଇବାର ଟିପୟ । ତିନି ଗୁଡ଼ାଏ ଚେୟାର ପଡ଼ିଛି । ଏଇ ହେଉଛି ମଣ୍ଟୁବାବୁଙ୍କର ବସିବା ଘର ।

ଘରର ଐଶ୍ୱର୍ଯ୍ୟରେ ମିଶି ରହିଛି ଅତି ଆଧୁନିକତାର ବାସନା । ମଣ୍ଟୁବାବୁ ନିଜେ ଗୋଟିଏ ଚେୟାରରେ ବସି ସଞ୍ଜିବକୁ ଆଉ ଗୋଟାଏ ଚେୟାରରେ ବସିବା ପାଇଁ ଇଙ୍ଗିତ ଦେଲେ । ସଞ୍ଜିବ ଗୋଟାଏ ଆରାମ ଚେୟାର ଉପରେ ବସି ପଡ଼ିଲା । ସିଗାରେଟ୍‌ରେ ନିଆଁ ଲଗାଇ ମଣ୍ଟୁବାବୁ ପଚାରିଲେ, ସିଗାରେଟ୍ ଖାଇବେ ? ସେ କିଛି କହିବା ପୂର୍ବରୁ ହାତକୁ ବଢ଼ାଇ ଦେଲେ ଖଣ୍ଡେ ସିଗାରେଟ୍ । ଅନେକ ଦିନ ଧରି ସିଗାରେଟ୍ ଖାଇନଥିଲା । ଏ ଖଣ୍ଡିକ ଖାଇସାରିଲା ପରେ କେମିତି ଭଲ ଲାଗିଲା । ସଞ୍ଜିବେଳୁ ମୁଣ୍ଡ ବିନ୍ଧୁଥିଲା । ସିଗାରେଟ୍ ଖଣ୍ଡିକ ଖାଇ ସାରିବା ପରେ ମୁଣ୍ଡବିନ୍ଧା କମି ଗଲା ପରି ଲାଗିଲା ।

ମଣ୍ଟୁବାବୁ ସିଗାରେଟ୍ ଧୂଆଁ ଛାଡ଼ୁ ଛାଡ଼ୁ କହିଲେ, ଆପଣଙ୍କ ଗୋଟାଏ କଥା କହିବା ପାଇଁ ଡାକିଥିଲି !

ସଞ୍ଜିବ ଚୁପ୍ ରହି ସିଗାରେଟ୍ ଧୂଆଁରେ ରିଙ୍ଗ୍ କରିବାକୁ ଲାଗିଲା ।

ଭାବିଥିଲି, ଗୋଟାଏ କାମ କରିପାରିବେ ?

କି କାମ ?

ନାଇଁ ଗୋଟାଏ ସେମିତି···

ଭଣ୍ଡି କହୁନାହାନ୍ତି !

ଭାବୁଥିଲି, କେହି ନାହାନ୍ତି ଗପସପ କରିବାକୁ । ଏଇ ମୋର ଗୋଟାଏ ବହି ବାହାରିଚି—ଦେଖିଛନ୍ତି ? ସେଲ୍ଫରୁ ମଣ୍ଟୁ ବାବୁ ତା ହାତକୁ ବହିଟା ବଢ଼ାଇ ଦେଲେ । ମୋର କଳିଙ୍ଗ ଇତିହାସ ନାମକ ଗୋଟାଏ ଇତିହାସ ବହି ।

ମୁଁ ତ ପଢ଼ି ପାରେନା ଓଡ଼ିଆ—

ଶୁଣନ୍ତୁ, ଏଇ ଓଡ଼ିଶା ବିଷୟରେ ମୁଁ ଲେଖିଚି ବହିଟା । ଆପଣ ଗୋଟାଏ କ୍ରିଟିସିଜମ୍ ଏ ବହି ବିଷୟରେ ଲେଖି ଦିଅନ୍ତୁ ନା, ମୁଁ ନେଇ ଗୋଟାଏ ମାସିକ ପତ୍ରିକାକୁ ଦେଇ ଦେବି ।

ସ୍ୱାତି କେମିତି ବିରକ୍ତ ହୋଇ କହିଲା, କହିଲି ପରା ଓଡ଼ିଆ ମୁଁ ପଢ଼ି ଜାଣେନା ।

ସେଥିରେ କିଛି ଯାଏ ଆସେନା: ଓଡ଼ିଶା ବିଷୟରେ ନିଶ୍ଚୟ ଆପଣଙ୍କର ଜ୍ଞାନଥିବ । ତ କାରେ ଇତିହାସ ଅଧ୍ୟାପନା କରୁଥିଲେ, ସେଥିକୁ ନେଇ ଗୋଟାଏ ଲେଖିଦିଅନ୍ତୁ ।

କିନ୍ତୁ ସେଟା ତ କ୍ରିଟିସିଜମ୍ ହେବ ନାହିଁ !

ନହେଉ, ମୋ ବହି ବିଷୟରେ ତ ଲେଖିଛନ୍ତି ବୋଲି ସମସ୍ତେ ଜାଣିବେ । ଏ ଓଡ଼ିଆ ଜାତି ବଡ଼ କୃତଘ୍ନ । କେହି ଆଗଭୁସ ଲେଖିବେନି ବହିଟା ଭଲ ହେଲେ ବି । ତେଣୁ ଲେଖକ ବିଚରାକୁ ନିଜେ ଲେଖିବାକୁ ପଡ଼େ ଆପଣାର ପ୍ରଶଂସାପତ୍ର । ଆପଣ ଲେଖିବେ

ବଳିହିଁ ହଇ ଧରଣର, ଗବେଷଣା ପୂର୍ଣ୍ଣ ଉପାଦେୟ ପୁସ୍ତକ, ଏହା ହେବ ସେ ପ୍ରବନ୍ଧର ବିଷୟ ବସ୍ତୁ ।

ସର୍ତ୍ତି ଉପର ରେଲିଂକୁ ଗୁଡ଼ି ସିଗାରେଟ୍ ଟାଣୁଥିଲା । ସିଗାରେଟ୍‌କୁ ଖୁବ୍ ଜୋରରେ ଦୁଇ ତିନି ଥର ଟାଣି ଦେଇ ଅସ୍ଟ୍ରେରେ ଗାଞ୍ଜି ଦେଲା ।

ଶୁଣନ୍ତୁ ଯଦି ଲେଖିଦେବେ ତାହେଲେ ମୁଁ ଆପଣଙ୍କୁ ଦଶ ଟଙ୍କା ଦେବି । କାଲି ଭିତରେ ଲେଖି ଦିଅନ୍ତୁ ନା !

ସର୍ତ୍ତି କିଛି ସମୟ ଚୁପ୍ ରହିଲା । ଭାବରେ କହିଲା, ନା, ମୁଁ ଅକ୍ଷମ । ମତେ ପ୍ରବନ୍ଧ ଲେଖିଆସେ, କିନ୍ତୁ ପ୍ରଶସ୍ତି ଲେଖି ଆସେ ନା—

ମଣ୍ଟୁବାବୁ ବିଗିଗଲେ ବୋଧହୁଏ । ହଠାତ୍ ଚେୟାର ଉପରୁ ଉଠି କହିଲେ, ନମସ୍ତେ, ବର୍ତ୍ତମାନ ହିଷ୍ଟ୍ରି ସୋସାଇଟିର ଗୋଟାଏ ଟି ପାର୍ଟି ଅଛି, । ଯିବାକୁ ପଡ଼ିବ । ଆଚ୍ଛା ଆପଣ ଆସନ୍ତୁ ।

ସର୍ତ୍ତି ନୀରବରେ ଚାଲି ଆସିଲା ।

ତାର ରୁମ୍‌ଟା ଅଗନ୍ଟୁ ମଟେରଗ୍ୟାରେଜ ରୂପେ ବ୍ୟବହୃତ ହେଉଥିଲା । ତେଣୁ ସେଠାକୁ ଇଲେକ୍ଟ୍ରିକ୍ ଆଲୁଅ ଆସି ପାରିନି । ଘର ଭିତରେ ଜମି ରହିଛି ଅନ୍ଧକାର । ସେ ନୀରବରେ ଆସି ଭଙ୍ଗା ଝରକା ପାଖରେ ପଡ଼ିଥିବା ଦରଭଙ୍ଗା ଚେୟାରଟାରେ ବସି ପଡ଼ିଲା । ତୋଅରର ଗୋଟାଏ ଡାକ ନାହିଁ ।

ଆକାଶରେ ଝକ୍ ଝକ୍ କରୁଛନ୍ତି ଅସଂଖ୍ୟ ତାରା । ସେମାନଙ୍କ ଭିତରୁ ଅନେକ ପୁଣି ଏ ପୃଥିବୀ ଠାରୁ, ଏ ସୂର୍ଯ୍ୟଠାରୁ ସହସ୍ର

ଗୁଣିବେ ବନ୍ଧ । ଏଇ ସ୍ତୂପ—ସ୍ତୂପଗ୍ରସ୍ତ ଭିତରେ ପୁଣି କେତେଟା ସ୍ତୂପରେ ଅଛି ମଣିଷ ନିବାସ । ସେଠାର ମଣିଷମାନେ କଣ ଏଇ ସ୍ତୂପ୍‌ଥିବାର ମଣିଷମାନଙ୍କ ପରି ହୋଇଥିବେ ଏତେ କୁତ୍ସିତ ? ଶିଶୁ ଅଜ୍ଞ ସ୍ୱଚ୍ଛୀତାର ଆବରଣ ତଳେ ସେମାନେ କଣ ହଜାଇଥିଲେ ଜୀବନର ସେତିକ ସୌନ୍ଦର୍ଯ୍ୟ ?

ତାରାର ମଳିନ ଆଲୋକରେ ସହରର ସୁଉଚ୍ଚ ପ୍ରାସାଦର ଚୂଡ଼ା ଅସ୍ପଷ୍ଟ ରୂପେ ଦେଖା ଯାଉଚି । ତାଙ୍କରେ ଏମିତି କେତେ ସନ୍ଧ୍ୟାରେ ସେ ବସନ୍ତି ଝରକା ପାଖେ ପ୍ରତିମା ନିକଟରେ । ବାହାରର ଆକାଶକୁ ଅନେକ ଥର ଅନାଇଛନ୍ତି । କିନ୍ତୁ କେବେ କଣ କଳ୍ପନା କରିଥିଲେ ପ୍ରାସାଦଗୁଡ଼ିକ ଉପରେ ଏଇ ମଳିନ ତାରକାଲୋକରେ ଦେଖାଯାନ୍ତି ?

କଲିକତାରେ ସେ କିଏମା ଗୁଳିକଟି ଗ୍ରହଣ କରିଥିଲେ ହୁଏତ ଭଲ ହୋଇଥାନ୍ତା । ତାହାଙ୍କୁ ଛାଡ଼ିଲେ ସେ ଗୁଳିକଟି ? ଜୀବନର କେଉଁ ଭିଭ ଅଭିଳାଷ ପାଇଁ ସେ ପ୍ରତ୍ୟାଖ୍ୟାନ କରିଦେଲେ ସେ ଗୁଳିକଟି ? ଜୀବନକୁ ନେଇ ଖେଳିବା ପାଇଁ ପିଲାଦିନର ଅଳସ ମୁହୂର୍ତ୍ତରେ ଅନେକଥର ଭାବିଛନ୍ତି । କିନ୍ତୁ ଆଜି ? ଜୀବନ ଆଜି ଯେତେବେଳେ ଆପେ ଆପେ ଖେଳୁଛନ୍ତି ତା ସଙ୍ଗେ, ତା ହାତରୁ ପିଲାଦିନର ସେ ଦୁରନ୍ତ ଚପଳତା ମରି ଯାଇଛି !

କେତେ ସଂଧ୍ୟାରେ, ଯେତେବେଳେ ଆକାଶରେ ଉଇଁଥାଏ ଦ୍ୱିତୀୟାର ବଙ୍କିମ ଚନ୍ଦ୍ର—ସେ ସେତେବେଳେ ପ୍ରତିମା ସାଙ୍ଗରେ ବସିଥାଏ ଝରକା ନିକଟରେ—ସେତେବେଳେ ଆଖିରେ ଲାଗିଥାଏ ଯୌବନର ରଙ୍ଗୀନ ଅଞ୍ଜନ । ସେଇ ଅଞ୍ଜନ ଦେଇ ଦେଖାଯାଉଥାଏ ଦୃଷ୍ଟିଥିବା ଆଉ ଏ ଆକାଶ କି ଉଦାର, କି ଶାନ୍ତ, କି ଗମ୍ଭୀର, ଆଉ କି ସୁନ୍ଦର ! ସେତେବେଳେ ମନେ ହେଉଥିଲା କେମିତି ଏ ଜୀବନ

ଆକାଶ ଆଉ ଶ୍ୟାମଳ ପୃଥିବୀ ପରି ଜୀବନ ବି ଉଦାର, ଗମ୍ଭୀର ଆଉ ସୁନ୍ଦର ! ଯେତେବେଳେ ମନେ ହେଉଥିଲା ମଣିଷ ଜୀବନର ଲକ୍ଷ୍ୟ ହେଉଛି ଜୀବନକୁ ଉପଭୋଗ କରିବା ଯୌବନ ନେଇ । କିନ୍ତୁ ଆଜି ଅଭିଜ୍ଞତାର ପରୀକ୍ଷା ଦେଇ ରୁଟି ଆଉ ଭାତ ଅତି ଅସ୍ୱାଭାବିକ ରୂପେ ମଣିଷ ଜୀବନର ଶ୍ରେଷ୍ଠ ଓ ଏକମାତ୍ର ଲକ୍ଷ୍ୟ ହୋଇ ଠିଆ ହୋଇଛି ଆଖି ଆଗରେ । ଆଜି ସେଇ ରୁଟି ଆଉ ଭାତ ପାଇଁ ଅତୀତର ପ୍ରେମ-ଶୀଳା ପ୍ରତିମା ପାଲଟିଛି ପରିଚାରିକା—ଆଉ ସେ ? ସେ ତାର ଅର୍ଜନରେ ଅଂଶୀଦାର ହୋଇଛି !

ମଣ୍ଟୁ ବନ୍ଧୁର ପ୍ରଶଂସା ଲେଖି ଦେଇଥିଲେ କଣ ବା କ୍ଷତି ହୋଇଥାନ୍ତା ? ମଣିଷର ଯେତେବେଳେ ସମ୍ମାନ ଆଉ ପ୍ରତିପତ୍ତି ବୋଲି କିଛି ଗୋଟିଏ ଥାଏ ସେତେବେଳେ କାହାର ପ୍ରଶଂସା ଲେଖିବା ହୁଏତ ଅପମାନଜନକ ବୋଧ ହୋଇପାରେ, କିନ୍ତୁ ତାର କଣ ପ୍ରତିପତ୍ତି ଓ ସମ୍ମାନ ଅଛି ?

ଗ୍ୟାରେଜରୁ କାରଟା ବାହାରିବାର ଶବ୍ଦ ଶୁଣାଗଲା ! ମଣ୍ଟୁ ବାବୁଙ୍କର ଟିପାର୍ଟି ଅଛି । କାର୍‌ଟା ରାସ୍ତା ଆଗ ଦେଇ ଚାଲିଗଲା ଖୁବ୍ ଜୋରରେ । ହୁଏତ ଏଇ ଗତିଶୀଳ ଯାନ ଦେଖାଇଦେଲା ମଣ୍ଟୁବାବୁଙ୍କ ପ୍ରତିପତ୍ତି ଆଉ ସମ୍ମାନ । ଆଜି ଏ ବିଂଶ ଶତାବ୍ଦୀର ଶେଷ ଭାଗରେ ସମ୍ମାନ ଆସି ରହିଛି ଗତିରେ; କିନ୍ତୁ ତାର ଯେତେ-ବେଳେ ଗତି ନାହିଁ ସେ ଯେତେବେଳେ ହୋଇ ଯାଇଛି ସ୍ଥାଣୁ, ତାର ଜୀବନ ଯେତେବେଳେ ଆଜି ତାର ସ୍ୱାଭାବିକ ଗତି ହରାଇ ସ୍ଥିର ହୋଇଯାଇଛି, ସେତେବେଳେ ଚାଲି ଯାଇଛି ସମ୍ମାନ !

ଅସହ୍ୟ ଅନ୍ଧକାର ! ଅନ୍ଧକାର ଭିତରେ ପ୍ରତ୍ୟେକ ଗତିବାନ ଗତିହୀନ ହୋଇଯାଏ । କାରଣ ଅନ୍ଧକାର ମଧ୍ୟରେ ଗତି ହେଉଛି

ବିପଦ ଜାଣନ୍ତି । ଅଜ୍ଞ ସେଥି ଦୁଏତ ଅନ୍ଧକାର ଭିତରେ ନିଜର ଗତି ବନ୍ଦ କରିବାକୁ ବାଧ୍ୟ ହୋଇଛି ।

ଶୋଇ ପଡ଼ିଲ କି ? ଦୁଆର ବନ୍ଦ ପାଖେ ପରି ଠିଆ ହୋଇ କହିଲା ।

ପରି ଉତ୍ତର ଦେଲା, ନାଇ ଶୋଇ ନାହିଁ । ସରଳକୁ ଭୁଆଇଦେଇ ଗଲ କି ?

ଆଦ୍ଧ ଆଦ୍ଧ ଶୋଇ ପଡ଼ିଲାଣି । କାଲି ଗୋଟାଏ ଦରପୋଡ଼ା ମହମବତୀ କବାଟ କଣରେ ରଖି ଦେଇଥିଲି, ଅଛି । ଆଲୁଅ ଲଗାଇଲି, ସରଳକୁ ଶୁଆଇ ଦିଏ—।

ପରି ଅନ୍ଧାରରେ ମହମବତୀଟି ବାହାର କରି ନିଆଁ ଲଗାଇଲା । ଭଙ୍ଗା ଦରଦରିଆ ଖଟ ଉପରେ କେତେ ଖଣ୍ଡ ଅଖା । ଅଖା ଉପରେ ଖଣ୍ଡେ ଛିଣ୍ଡା ମଇଳା ଚଦର ବିଛାଇ ଦେଲା । ପ୍ରତିମା ସରୋଜକୁ ତା ଉପରେ ଶୁଆଇ ଦେଲା । ପ୍ରତିମା ଗଲାବେଳକୁ କହିଲା, ବତୀଟା ଲିଭାଇ ଦିଅ । ଖାଇଲାବେଳକୁ କାମରେ ଆସିବ ।

ପ୍ରତିମା ଚାଲିଗଲା ।

ମହମବତୀଟା ନିସ୍ପନ୍ଦ ଭାବରେ ଜଳି ଜଳି ଚାଲିଛି । ସେ ଜଳି ଜଳି ନିଜେ କ୍ଷୟ ହୋଇ ଦୁନିଆକୁ ଦେଇଯାଉଛି ଆଲୋକ । କିନ୍ତୁ ନିଜେ ସେ ଜଳି ଜଳି ଦୁନିଆକୁ କଣ ଦେଇ ଯାଉଛି ?

ପରି ପୁଣି ଝରକା ବାଟେ ଆକାଶକୁ ଚାହିଁଲା । ତାରା ଭରା ଆକାଶ । ଆକାଶର ସେଇ ତାରା ଭିତରୁ ଫୁଟି ଉଠୁଛି ସେପରି କାହାର ଭଉଣୀ ଛବିର ମୁହଁ । ଦୁଇ ଆଖିରୁ ଝର ଝରୁଛି ଦୁଇଧାର ଲୁହ । ମୁଣ୍ଡବାଳ ଫୁରୁ ଫୁରୁ ହୋଇ ଉଡ଼ୁଛି । ଆଖି ଭିତରକୁ ପଶି

ଯାଉଛି । ଛବିର ସେଇ ମୂର୍ତ୍ତି ଭିତରେ କେଉଁ ପ୍ରେତର ମୂର୍ତ୍ତି ଫୁଟି ଉଠିଛି ଯେପରି ।

ସେତେବେଳକୁ ସେ କଲେଜରେ ପାଠ ପଢୁଥାଏ । ଆଇ. ଏ. ଦ୍ୱିତୀୟ ବର୍ଷ ବୋଧ ହୁଏ । ବାପା ଥାଆନ୍ତି ଗୋଟାଏ ହାଇ-ସ୍କୁଲରେ ମାଷ୍ଟର । ଜମା ସତୁରିଟା ଟଙ୍କା ଦରମା । ସେଥିରେ ବଂଶ ଗୋଟିଏ ଚଳିବାକୁ । ପୁଣି ତା ପାଖରୁ ପଠାନ୍ତି ତିରିଶ ଲେଖାଏଁ । ବାକି ଚାଳିଶଟା ଟଙ୍କାରେ ସମୁଦାୟ ବଂଶଟି ଚଳେ । ସେତେବେଳର କଥା । ଛବି ଅପାର ବାହାଘର ହେବାର ଠିକ୍ ହେଲା । କେତେ ଜାଗା ପଡ଼ିଲା, କେତେ ଜାଗା ଭାଙ୍ଗିଲା । କେଉଁ ବରପକ୍ଷ କହିଲା, ଦରକାର ସୁନା ତିରିଶ ଭରି, ଦେଇ ପାରିବ ? କିଏ ଖୋଜିଲା କୋଡ଼ିଏ ଭରି ସୁନା ତ ଅଛି କିଏ ପଚାଶ ଭରି । ବାପା ବର ଖୋଜି ଖୋଜି ବିରକ୍ତ ହେଲେ । ଶେଷରେ ଗୋଟାଏ ଜାଗାରେ ଠିକ୍ ହେଲା ବାହାଘର । ବାହାଘର ହେବାକୁ ପନ୍ଦର ଦିନ କି କୋଡ଼ିଏ ଦିନ ଥାଏ । ଛବିଅପାଠାରୁ ଗୋଟାଏ ଚିଠି ଆସିଲା । ସେ ଲେଖିଥିଲା—ସଞ୍ଜି, ମୋର ବାହାଘର ହେଉଛି । ଘରକୁ ଥରେ ବାହାଘର ପୂର୍ବରୁ ଦେଖିବୁ ଯେମିତି । ମୋ ଷଣ୍ଡ ! ସେ ଦିନ ସିଧା ସିଧା ଯାଇ ପହଞ୍ଚିଥିଲା ବର ଗାଁରେ । ବର ଜମିଦାର । ବରର ଦ୍ୱିତୀୟ ପକ୍ଷ ସ୍ତ୍ରୀ ମରିଯାଇଛି । ଛବି ହେବ ଦ୍ୱିତୀୟ ପକ୍ଷ । ବାଳ-ଗୁଡ଼ାକ ଧଳା ପଡ଼ି ଆସିଲାଣି । ନାନାପ୍ରକାର ଔଷଧ ଦେଇ ସେତକ ଧଳା କଳଂକାର ଚେଷ୍ଟା ଚାଲିଛି । ନକଲି ଦାନ୍ତ ପାଟିରେ । ମନ ବିଦ୍ରୋହ କରି ଉଠିଥିଲା ସେଦିନ । କିନ୍ତୁ ତା ପରେ କଣ ହେଲା ?

ବର ଡାକିଲା ତାକୁ । ତାଙ୍କର ଶୋଇବା ଘରକୁ ନେଇ-ଗଲା । ସନା ଡାର. ସନା ଘଣ୍ଟା. ସନା ଚାଲ. ସନା ଭାତ. ସନା

ଇଟା, ଖାଲି ସୁନା । ବର କହିଲା, ବାହାଘର ଆଗରୁ ମୁଁ ଦୁଇ ହଜାର ଟଙ୍କା ଦେବି । ମୁଁ ଜାଣେ ତମର ଅଭାବ ପଣ । ତମକୁ ପଢ଼ିବାକୁ ବି ଟଙ୍କା ଦେବି । ବିଲାତ ଯଦି ଯିବ, ବିଲାତ ପଠେଇବି । ଝରି ସେଠାରୁ ଆସିଲା ବେଳକୁ ତା ହାତରେ ଜବରଦସ୍ତି ଗୋଟାଏ ସୁନା ଘଣ୍ଟା ବାନ୍ଧି ଦେଇଥିଲା । ସେ ଭାବିଥିଲା କେତେ କଥା କହିବ ବୋଲି । କିନ୍ତୁ ଗୋଟିଏ ପଦ ସୁଦ୍ଧା କହୁ ପାରିଲାନି ।

ତା ପରେ ଭଉଣୀ ସିନା ବଞ୍ଚିଲା ନାହିଁ, ବଞ୍ଚିଥିଲେ ଝରି ନିଶ୍ଚୟ ବିଲାତ ପଠାଇଥାନ୍ତା ପଢ଼ିବାକୁ । ବାହାଘରର ଦଶ ଦିନ ପରେ ଛବି ଅପା ଆତ୍ମହତ୍ୟା କରିଥିଲା । ଅନେକ ଦିନ ପରେ ଝରିର ମନ ଭିତରେ ଅଜାଣତରେ ସେଇ ଛବି ସ୍ପଷ୍ଟ ହୋଇ ଉଠିଲା କ୍ରମଶଃ । ଦୂର ଆକାଶର ସେଇ ତାରା କେଉଁଠିରେ ନାଚୁଛି ଯେପରି ଛବି ଅପାର ସେଇ ମୂର୍ତ୍ତି—ଲହୁ ଟଳୁଛି, ଛବି ଅପା ଯେପରି କହୁଛି, ମତେ ମାରିଦେଲ ତମେ ସବୁ ? ମତେ ମାରି ଦେଇ ତମେ ଭଲରେ ଅଛ ତ ? ଆଜି ହୁଏ ତ ତାର ଅଭିଶାପ, ତାରି ଅସନ୍ତୁଷ୍ଟ ଆତ୍ମାର ଅସନ୍ତୋଷ ଆସି ପଡ଼ିଛି ତା ଜୀବନ ଉପରେ । ଛବି ଅପା ସେଦିନ ନୀରବରେ ସହ୍ୟ କରିଥିଲା ସେମାନଙ୍କର ଅତ୍ୟାଚାର ଆଉ ମାରଧରକୁ ଦେଇ ଯାଇଛି ଏ ଅଭିଶାପ ! ଆଜି ଝରିର ଦୁର୍ଦ୍ଦିନରେ ଝୁଲୁଛି ଛବି ଅପାର ସେଇ ଅସନ୍ତୁଷ୍ଟ ଆତ୍ମା—ପବନ ରୂପରେ, ଅନ୍ଧାର ରୂପରେ ଶୋକ ରୂପରେ, ଅଭାବ ରୂପରେ···ସେ ଆଜି ପ୍ରତିଶୋଧ ନେବ ତା ପ୍ରତି ହୋଇଥିବା ଅତ୍ୟାଚାରର, ତା ପ୍ରତି ହୋଇଥିବା ଲୁଚକାଳିର, ଅବିଚାରର···। ନା, ଛବି ଅପା ହୁଏତ ଅଭିଶାପ ଦେଇନାହିଁ । ତାର ଅସନ୍ତୁଷ୍ଟ ଆତ୍ମା ନୀରବରେ ହୁଏତ ସହୁ ନେଇଛି ତା ପ୍ରତି ହୋଇଥିବା ଅତ୍ୟାଚାରକୁ···। ଝରି ଆକାଶକୁ ଚାହିଁଲା । ଛବି ଅପାର ମୁହଁ ସେହି ତାରା ଭିତରେ କେଉଁ ଆଡ଼େ ଲୁଚିଗଲାଣି ।

ଆକାଶରେ ପଡ଼ିଛି ଛାୟାପଥ । ବୈଜ୍ଞାନିକ କହେ ଏଇ ଛାୟାପଥ ଭିତରେ ଲୁଚି ରହିଛନ୍ତି କୋଟି କୋଟି ତାରା···ବିନ୍ଦୁର ସମଷ୍ଟିରେ ରେଖା ଆଉ ରେଖାର ସମଷ୍ଟିରେ ଯେପରି ହେଲପରି ତାରକାମାନଙ୍କ ସମଷ୍ଟିରେ ହୋଇଛି ଏଇ ଛାୟାପଥ—ଏଥିରେ ଏକର ଅସ୍ତିତ୍ୱ ନାହିଁ । ରେଖା ଭିତରେ ବିନ୍ଦୁ ହରାଏ ତାର ସ୍ୱାତନ୍ତ୍ର୍ୟ । ସେହିପରି ଛାୟାପଥରେ ପ୍ରତ୍ୟେକ ତାରା ହରାଉଛି ତାର ସ୍ୱାତନ୍ତ୍ର୍ୟ । ପୃଥିବୀରେ ଜୀବନର ଯେଉଁ ପ୍ରଖର ସ୍ରୋତ ଚାଲିଛି ହୁଏତ ତାର ଗତିଶୀଳ ସ୍ରୋତ ଭିତରେ ରହିଛନ୍ତି ଅସଂଖ୍ୟ ସର୍ତି, ଅସଂଖ୍ୟ ପ୍ରତିମା ଆଉ କୋଟି କୋଟି ସମ୍ବେଗ । ତା'ର ଭିତରେ ହଜି ଯାଇଛି ସେମାନଙ୍କର ସ୍ୱାତନ୍ତ୍ର୍ୟ । ହଜୁ, କ୍ଷତି କ'ଣ ?

ସେଇ ଛାୟାପଥ ଦେଇ ଭାସି ଆସିଲା, ଏ କାହାର ମୁହଁ ?
ମା'ର ! କେତେ ଦୁଃଖରେ, କେତେ କଷ୍ଟରେ ନିଜର ସବୁ ସ୍ୱାର୍ଥ ତ୍ୟାଗ କରି ବଢ଼ାଇଥିଲା ତାକୁ, କୌଣସି ପ୍ରତିଦାନର ଆଶା ନ ରଖି । ଆଉ ମୃତ୍ୟୁର ଅନ୍ଧକାର ଭିତରେ ତାର ଶେଷ ସ୍ୱାର୍ଥ ହୁଏତ ସମାଧି ଘେନି ଥିବ । ମା'ର ଏତେ ଦାନ ବଦଳରେ ସେ ତାକୁ କଣ ଦେଇଛି ? କି ସୁଖ, ଜୀବନର କି ସ୍ୱାଦ ତାକୁ ଦେଇଛି ? ମା'ର ସ୍ମୃତି ବି ଆଜି ଇତିହାସରେ ପରିଣତ ହୋଇ ଯାଇଛି । ଇତିହାସ ଆଉ ଇତିହାସ···ଦୁନିଆର ପ୍ରତ୍ୟେକ ମୁହୂର୍ତ୍ତ ପରିଣତ ହୋଇଯାଉଛି କି କ୍ଷିପ୍ର ଗତିରେ ଇତିହାସରେ । ସେ ସେଥିରୁ କୌଣସି ଏକ ମୁହୂର୍ତ୍ତକୁ ଧରି ରଖିବାକୁ ଯାଇ କ୍ଷତ ପାଇଛି । ଇତିହାସର ଶକ୍ତି କି ଅସୀମ !

ଦୂରର ଘଣ୍ଟାରେ ବାଜିଲା ଟଂ ଟଂ ହୋଇ ନ'ଟା । ରେଡ଼ିଓରେ ଚାଲିଛି ସମ୍ବାଦ ପରିବେଷଣ । ଆଉ କେତେ ମିନିଟ ପରେ ରେଡ଼ିଓ

କଂଗ୍ରେସର ଶେଷ ଅଧିବେଶନ ଶେଷ ହୋଇଯିବ । ସମ୍ବାଦ···ସମ୍ବାଦ ଇଣ୍ଡୋନେସିଆରେ ସାଧାରଣତନ୍ତ୍ର ସରକାର ପ୍ରତିଷ୍ଠା ହେଲା··· ସମ୍ବାଦ···ହାଇଦ୍ରାବାଦରେ ନିକଟରେ ଗଣଭୋଟ ହେବ···କିନ୍ତୁ ତାର ପରିବାରର ସମ୍ବାଦ, ତାର ଦୁଃଖର ସମ୍ବାଦ କଣ ସମ୍ବାଦ ନୁହେଁ ? ପୃଥିବୀର ଲୋକମାନଙ୍କ ପାଇଁ ସମ୍ବାଦ ହୋଇପାରେ ନା ?

ମହମବତୀଟା କହୁଲି ଲିଭାଇ ଦେବାକୁ, ସେତେବେଳୁ ଜଳି ଜଳି ସରିଗଲା ? ସତି ଅନାଇଲା ମହମବତୀଟା ଶେଷ ହୋଇ ଆସିଲାଣି । ପ୍ରତିମା ଦୁଇ ହାତରେ ଦୁଇଟି କଂସା ଧରି ଭିତରକୁ ପଶି ଆସିଲା । ଆଜି ପଖାଳ —

ସତି ଛିଣ୍ଡା ଗାମୁଛାଟା ଦେହରେ ଗଳାଇ ଗଳାଇ କହିଲା, ମୁଁ ଆସେ —। ପ୍ରତିମା କଣ ପଚାରୁ ଥିଲା । ସତି ଦ୍ରୁତ ଗତିରେ ରାସ୍ତା ଉପରକୁ ଚାଲି ଆସିଲା । ଆଜି ରାତି ତିନିଟା ଟ୍ରେନରେ ବରହମପୁର ଯିବାକୁ ପଡ଼ିବ । କାଲି ଅଛି ଇଣ୍ଟରଭ୍ୟୁ । ହୁଏତ କୌଣସି ଚାକିରି ମିଳିପାରେ ।

ବରହମପୁର ଯିବାକୁ ହେଲେ ଦରକାର ଅନ୍ତ କମରେ ସାତ ଟଙ୍କା କି ଆଠ ଟଙ୍କା । ବନ୍ଧୁ ସୁଧାଂଶୁ ପାଖରୁ ଯଦି ଧାର ମିଳେ । କଟକରେ ଏତେ ଅଳ୍ପ ଦିନ ମଧ୍ୟରେ ସୁଧାଂଶୁ ସଙ୍ଗେ ବେଶ ବନ୍ଧୁତ୍ୱ ଜମି ଯାଇଛି । ସୁଧାଂଶୁ ଗୋଟାଏ ଏକ ମହଲା ଘର ଭଡ଼ା ନେଇଥାଏ । ସେ ଜଣେ ବଡ଼ ସରକାରୀ ହାକିମ ।

ଗେଟ୍ ପାଖରେ ଚାକର କହିଲା, ବାବୁ ବସିବା ଘରେ ବସି କଣ ପଢ଼ୁଛନ୍ତି । ଗଲାବେଳକୁ ଫାଟକଟା ଅଟକାଇ ନେଇଯିବେ ।

ମୁଁ ପିଣ୍ଡାରେ ଶୋଇଛି । ମା'ହରବଡ଼ ଯାଇଛନ୍ତି ଥିଏଟର ଦେଖିବାକୁ । ଅପ୍ପ ନାହାନ୍ତି ।

ସନ୍ଧି ଚୁପ ରହି ସୁଧାଂଶୁର ପଢ଼ିବା ଘର ଦ୍ୱାରରେ ଅଗେଇଗଲା । ସୁଧାଂଶୁ ସନ୍ଧ୍ୟାବେଳର ଖବର କାଗଜ ଖଣ୍ଡେ ଧରି ଶୋଇଯାଇଛନ୍ତି । ଟେବୁଲ ଉପରେ ଲ୍ୟାମ୍ପଟା ଜଳୁଛି ନିଷ୍ପ୍ରଭ ଭାବରେ । ଘରର ଅନ୍ଧାର କୋଣରେ ମିଶି ରହିଛି ଯେମିତି ଧନର ବାସନା । ଚତୁର୍ଦ୍ଦିଗରେ ଭାସି ବୁଲୁଛି ଗମ୍ଭୀର ଅସ୍ପଷ୍ଟ ବନ୍ଦନା । ଟେବୁଲ ଉପରେ ଟେଣ୍ଟ ଟାଇମ୍‌ପିସ୍‌ଟା ଟିକ୍ ଟିକ୍ କରି ଚାଲିଛି । ବଞ୍ଚିବା ପାଇଁ ସେ ଯେପରି ପ୍ରତି ମୁହୂର୍ତ୍ତରେ ଅଭିନାଦ କରି ଉଠୁଛି । ଟାଇମ୍‌ପିସ୍‌ଟାର ସେ ପାଖରେ ଥୁଆ ହୋଇଛି କେମିଷ୍ଟ୍ରିର ଗୋଟାଏ ମୋଟା ବହି । ଏଇ କେତେ ଦିନ ହେଲା ସୁଧାଂଶୁ କେମିଷ୍ଟ୍ରି ରିସର୍ଚ୍ଚରେ ଲାଗି ଲାଗି ନୂଆକେ ଗୋଟାଏ ନୂଆ ଗ୍ୟାସ ଆବିଷ୍କାର କରିଛି । ଆଉ ସେଇ ଆବିଷ୍କାରର ଆନନ୍ଦରେ ବୁଏତ ନିଦ ଲାଗି ଯାଇଛି ! ଘରର ଚାରିପଟେ ବିକ୍ଷିପ୍ତ ଭାବରେ ପଡ଼ିଛି କୁସନ ଚେୟାର କେତେଟା । କବାଟ ସେ ପାଖକୁ ଗୋଟାଏ ଚେୟାରର ଗଦି ଉପରେ ବିଲୁଆଟାଏ ବସି ଢୁଳାଉଛି ।

ଟାଇମ୍ ପିସ୍‌ଟା ଚାଲିଛି ପୂର୍ବପରି, ଟିକ୍ ଟିକ୍ ଟିକ୍ । ଟାଇମ୍ ପିସ୍‌ର ଏ ପାଖକୁ ଥୁଆ ହୋଇଛି ମନିବ୍ୟାଗଟା ।

ସନ୍ଧି ଚାରିଆଡ଼କୁ ଚାହିଁଲା, ସବୁ ନିଃଶବ୍ଦ ଚୋରାଇ ଅପିଛି । ଏଇ ନୀରବତା ଭିତରେ ଚାକରଟାର ନିଃଶ୍ୱାସନେବାର ଶବ୍ଦ ଶୁଭୁଛି ଯାହା ।

ଟେବୁଲ ନିକଟକୁ ଅଗେଇ ଗଲା । ଟାଇମ୍‌ପିସ୍‌ଟାର ଡାଏଲଟା ହୋଇଯାଇଛି ଯେପରି ଗୋଟାଏ ମଣିଷର ମୁହଁ । ଓଠରେ ତାର

ଖେଳି ଯାଉଛି ଏକ ବିଦ୍ରୂପର ହସ । ସେ ଯେପରି କହୁଛି—ଅଧ୍ୟାପକ ସଚ୍ଚି ବୋଷ ! ଆଜି ଚୋରି କରୁଛନ୍ତି ?···ସଚ୍ଚି ଟେବୁଲ ପାଖରୁ ଘୁଞ୍ଚି ଆସିଲା ପଛକୁ । ସ୍କ୍ରିନ ଅଡେଇ ବାହାରକୁ ଚାଲି ଆସିଲା ।

ତେବେ ବରହମପୁର ଯିବ କିପରି ? କାଲି ସକାଳ ଦଶଟାରେ ହେବ ଇଣ୍ଟରଭ୍ୟୁ । ଶେଷ ଆଶା···ନା' ଯିବାକୁ ହେବ ।

ପୁଣି ଫେରିଲା । ଟେବୁଲ ଉପର ଟାଇମ୍‌ପିସ୍‌ଟା ଚାଲିଛି । ଡାଏଲ୍ ଭିତରକୁ ଅନାଇଲା । ମଣିଷ ମୁହଁ ଦେଖା ଯାଉନି ଆଉ । କିନ୍ତୁ ଦୁଇଟା ଅଙ୍ଗୁଳି ଯେପରି ତା ଆଡକୁ ଦେଖା ହୋଇଛି, ଶବ୍ଦ କେଉଁ ଶୂନ୍ୟରୁ ଭାସି ଆସୁଛି, ଅଧ୍ୟାପକ ସଚ୍ଚି ବୋଷ ଚୋରୀ କରୁଛି । ଧର ଧର···! ଭୟରେ ଆର୍ତ୍ତନାଦ କରି ଚୋର ଶବ୍ଦ ପଛକୁ ଘୁଞ୍ଚି ଆସିଲା । ଚମକି ପଡ଼ି ଚାରିପାଖକୁ ଚାହିଁଲା । କିଏ କହିଲା କି ? ନା' ଆରପଟରୁ ମୁହିଁ ଭରି ସୁଧାଂଶୁ ଶୋଇ ପଡ଼ିଛି । ତାଙ୍କର ନିଃଶ୍ୱାସ ନେବାର ଶବ୍ଦ ଭାସି ଆସୁଛି ।

ଧୀରେ ଧୀରେ ନିଶ୍ୱାସ ବନ୍ଦ କରି ଟେବୁଲ ପାଖକୁ ଗଲା ।

ମନିବ୍ୟାଗରୁ ଦଶ ଟଙ୍କିଆ ନୋଟ ଖଣ୍ଡେ ବାହାରି ଭିତର ପକେଟରେ ରଖିଲା ।

ରାସ୍ତା ଉପରକୁ ଚାଲି ଆସିଲା ।

  

ଟଂ ଟଂ ହୋଇ ଦୁଇଟା ବାଜିଲା । ସଚ୍ଚିର ନିଦ ହଠାତ୍ ଭାଙ୍ଗିଗଲା । ଟ୍ରେନ କମ୍ପାର୍ଟମେଣ୍ଟରେ । ପାଖରେ ଶୋଇଛି ସୁଦେବ, ତା

ସେପଟକୁ ପ୍ରତିମା । ସତ୍ୟେନ୍ଦ୍ରର ପିନ୍ଧା ଜାମାର ପକେଟରେ ହାତ ପୂରାଇଲା । ଆଠଣିଟା ଅଛି । ତିନି ଦିନ ତଳେ ମଣ୍ଟୁ ବାବୁଙ୍କ ସ୍ତ୍ରୀ ତାକୁ ଦେଇଥିଲେ । ଅଜାଡ଼ି ଖର୍ଚ୍ଚ କରନା, ରଖିଚ । ଆଠଣିଟା ପକେଟରୁ ନେଇ ଆସିଲା । ଅନ୍ତତଃ ପିଆରେନ୍ଦ୍ ପାଉଡ଼ର୍‌ଟାଏ କିଣାଯାଇ ପାରବ ।

ପ୍ରତିମାକୁ ଉଠାଇଲା । ପ୍ରତିମା କହିଲା, ଏତେ ଶୀତରେ ଯିବ କେମିତି ?

ଦିନେ ତ ପୁଣି ବାହାରେ ଏତେ ଶୀତରେ ଶୋଉଥିଲେ ପର ?

ଗୁଦଡ଼ିଟା ନେଇଯାଅ ।

ତମେ କଣ ଘୋଡ଼ି ହେବ ?

ଆମର ଚଳିଯିବ ଯେ, କାଲି ସନ୍ଧ୍ୟାବେଳକୁ ତମେତ ଆସିବ ।

ନାହିଁ ଆଉ, ଏଇ କାମିଜରେ ମୋର ବେଶ ଚଳିଯିବ ।

ସଙ୍ଗି ବାହାରକୁ ବାହାରି ପଡ଼ିଲା । ପ୍ରତିମା କହିଲା, ଦେଖା-ଯାଉ କଣ ଭଗବାନ କରୁଛନ୍ତି, ଯଦି ଭାଗ୍ୟ ଫେରି ଯାଆନ୍ତା !

ସଙ୍ଗି ରାସ୍ତା ଉପରକୁ ଆସି ପଛକୁ ଅନାଇଲା । ପ୍ରତିମା କିନ୍ତୁ ଅନ୍ଧାରରେ ଆଉ ଦେଖାଯାଉନି । କବାଟ ପାଖରେ ଠିଆ ହୋଇ ହୁଏତ ତା ଆଡ଼କୁ ଚାହୁଁଚି । କବାଟ ଦେଇ ଦେଇଥିଲେ ସେ ଅଦ୍ଭୁତ ଶବ୍ଦଟାତ ନିଶ୍ଚୟ ହୋଇଥାନ୍ତା ! ନା, ପ୍ରତିମା କବାଟ ପାଖରେ ଠିଆ ହୋଇ ତାରି ଆଡ଼କୁ ଚାହିଁଚି ।

ଖୁବ୍ ଶୀତ ପଡ଼ିଚି ଏ ବର୍ଷ !

ସବ୍‌କି ଖୁବ୍ ଜୋରରେ ଷ୍ଟେସନ ଦଗରେ ଦୌଡ଼ିବାକୁ ଆରମ୍ଭ କଲା ।

କାଲି ସକାଳୁ ସୁଧାଂଶୁ ଦେଖିବ, ତା ମନିବ୍ୟାଗରେ ଦଶଟଙ୍କାର ନୋଟଟି ନାହିଁ । ଟିକିଏ ଖୋଜିବ, ତାପରେ ପୁଣି ବସିବ ବାର୍ଥରେ ମନ ଦେବ । କିନ୍ତୁ ସବୁଙ୍କୁ ? ସେଦିନ ସୁଧାଂଶୁ ପରି ସକାଳୁ ଉଠି ଦେଖିବ ତା ପକେଟରୁ ଆଠ'ଣା ପଇସା ଲୁଅଚ୍ଛେ କଢ଼ି ଯାଇଛି । ଦିନଦିନ ଧରି କେତେ ଲୋଭକୁ ଜବରଦସ୍ତି ଚୁପି, ଯେଉଁ ଆଠ'ଣାକୁ ସମ୍ପୂର୍ଣ୍ଣ ରଖାଯାଇ ପାରିଥିଲା, ଗୋଟାଏ ମୁହୂର୍ତ୍ତରେ ତାହା କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଇଛି ! ହତଭାଗୀ ପାଞ୍ଚ ବର୍ଷର ସବଳ ନିରୀହ ଝିଅ ସବୁଦିନ କପଡ଼ ଛାଣିବ, ବାପ, ଯେଉଁ ବାପ ତାର ଜୀବନ ପାଇଁ ତାର ପ୍ରତି ରକ୍ତବିନ୍ଦୁ ଦେଉଛି— ସେଇ ଆଦରର, ପ୍ରାଣର ବାପ ପୁଣି ଚେଷ୍ଟା କରି ନେଇଛି ସେଇ ଆଠ'ଣା ପଇସା ? ଆଉ ଟିକିଏ ସମୟ ପରେ ସେଇ ଆଠ'ଣା ପଇସା ଆକାଶର ଏଇ ଅନନ୍ତ ଉଦାର ଗର୍ଭରେ ଧୂଆଁ ଆକାରରେ ମିଶିଯିବ ଚିରଦିନ ପାଇଁ, ପଛରେ ପଦଚିହ୍ନ ନରଖି । ତାପରେ··· ତାପରେ···ସେ ଆଠ'ଣା ପଇସା କିପରି ଧ୍ୱଂସ ହୋଇଗଲା, କିପରି ଶୂନ୍ୟରେ ପରିଣତ ହୋଇଗଲା, ତାହା ଠିକ୍ କରିବା ସହଜ ହେବ ନାହିଁ ! ଗୋଟିଏ ଅସହାୟା, ନିରୀହ, ହତଭାଗୀ ଝିଅର ସମସ୍ତ ସମ୍ପଦ ଏକ ମୁହୂର୍ତ୍ତରେ ଶୂନ୍ୟରେ ପରିଣତ ହୋଇଯିବ ଚିରଦିନ ପାଇଁ ।

ଗୋଟାଏ ରିକ୍ସା ଆସିଲା ପଛରୁ । ରିକ୍ସାର ଉପର ପର୍ଦ୍ଦା ଟେକା ଯାଇଛି । ଗୋଟାଏ ମୋଟା ଲୋକ ବସିଛି ତା ଉପରେ । ପୌଷର ଏ ଅସହ୍ୟ ଶୀତ ତାର ମୋଟା ଚମଡ଼ାରେ ହୁଏତ ପଶି

ଖାଲିଣ । ଏ ଲୋକଟା ଏତେ ମୋଟା ହେଲା କିପରି ? ହୁଏତ ପାରାସାଇଟ୍ ପରି ଅନ୍ୟର ରକ୍ତ, ଅନ୍ୟର ଖାଦ୍ୟସାର ଶୋଷଣ କରି ନିଜେ ଏତେ ମୋଟା ହୋଇଛି ।

ଗଣତନ୍ତ୍ରର ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ହୁଏତ ଲୋକଟା ଓ୍ୟାଟର ଗ୍ରୁପ୍, ଉଷ୍ମଗ୍ରୁପ୍‌ପରି କୌଣସି ଏକ ଗ୍ରୁପ୍ ଆବିଷ୍କାର କରିଥିବ ନିଶ୍ଚୟ ! କାରଣ ଏ ଗଣତନ୍ତ୍ରର ଯୁଗରେ ପାରା-ସାଇଟ୍ ହେବା ଯେ ଅପରାଧ, ଗୁରୁତର ଅପରାଧ । କିନ୍ତୁ ଗ୍ରୁପ୍ ଗଣତନ୍ତ୍ରର ଅର୍ଥ ମେସ୍‌ମେରିଜମ୍ ପରି କାମକରେ । ଆଖିରୁ ଦୃଷ୍ଟିଶକ୍ତି କାଢ଼ି ନିଏ ;

ଷ୍ଟେସନ ପାଖ ଗୋଟାଏ ଚା ଦୋକାନ ଭିତରକୁ ପଶି ପଡ଼ିଲା ।

ଚା ଗୁଡ଼ କପ୍ !

ଦୋକାନୀଟି ତା ଆଡ଼କୁ ଟିକିଏ ଚାହିଁଲା । ତାପରେ ଚା ଆଣିଦେଲା । ଚା ପିଇସାରି ତିନି ପ୍ୟାକେଟ କାରଲଟନ୍ ଆଉ ଦିଆସିଲି ମୁଠାଏ କିଣିଲା ।

ଷ୍ଟେସନ ।

ଗାଡ଼ି ଆସିବାକୁ ଆହୁରି ଅଧଘଣ୍ଟାଏ ଡେରି ଅଛି । ପ୍ଲାଟଫର୍ମରେ ଠିଆ ହୋଇ ନିଶ୍ଚିନ୍ତରେ ସିଗାରେଟ ଟାଣିବାରେ ଲାଗିଲା ସେ ; ସିଗାରେଟ୍ ଟାଣିବା ଫଳରେ ଆଉ ଗରମ କପ୍ ଚା ପିଇବା ଫଳରେ ଶୀତ କେଉଁ ଆଡ଼େ ଗାଢ଼ କରି ପଳାଇଛି । ମନରୁ ସବୁ ଦୁଶ୍ଚିନ୍ତା ପଳାଇଛି ସିଗାରେଟ୍‌ର ଏଇ ହାଲୁକା ଧୂଆଁରେ ।

ଏଁ, ଏ କାହାର ମୁହଁ ? ସେ ମୁହଁଟା ଯେପରି ଚିତ୍କାର କରି କହୁଛି, ଅଧ୍ୟାପକ ପରି ବୋଷ ଅଜା ଗ୍ରେହ୍ନ କରିଛି, ଅଧ୍ୟାପକ···

ସଞ୍ଜି ଦଉଡ଼ି ଦଉଡ଼ି ପ୍ଲାଟଫର୍ମର ଅର ପାଖକୁ ଗୁଲିଗଲା । ହେଲେ ସେ ଲୋକଟା ଯେମିତି ତା ଅଡ଼କୁ ଅଙ୍ଗୁଠି ଦେଖାଇ କହୁଛି, ଅଧ୍ୟାପକ ସ୍ତ୍ରୈର ଜବର, ସ୍ତ୍ରୈର… । ସଞ୍ଜି ଅରଣାଖକୁ ମୁହଁ କରି ଠିଆ ହେଲା । ଗୁରୁଅନ୍ଦେ ସେପଟେ ସେଇଁ ମୁହଁ, ମୁହଁରେ ଛଦ୍ମ ପାପୁକ ୪୪ । ୪୫ ଅଖି ବୁଜି ଦେଲା । ମନ ଭିତରୁ କିଏ ସେପଟେ ଚିତ୍କାର କରି ଉଠିଲା,·· ସଞ୍ଜି ଚୋଖ ଅଜ ମାନବକତାର, ମନୁଷ୍ୟତାର ବେକ ମୋଡ଼ି ଦେଇଛି । ଅଧ୍ୟାପକ ସଞ୍ଜି ଚୋଖ ମାନବିକତାର ତଣ୍ଟି ଚିପି ଦେଇଛି… ।'

ନା, ନା, କି ଦୁର୍ବଳ ସେ ! ସବୁ ଅସିଥିବା ସିଗାରେଟକୁ ଫିଙ୍ଗି ଦେଇ ନୂଆ ସିଗାରେଟଟାଏ ଲଗାଇଲା । ମନ ଭିତରୁ, ହୃଦୟରୁ ଭିତରୁ ଉଠୁଥିବା ସେଇ ଛୁପକୁ ଲୁଚାଇ ଦେବାକୁ ବସିଲା ସିଗାରେଟର ହାଲୁକା ନୀଳ ଧୂଆଁରେ ।

## ଛୁଟି

ଟ୍ରେନର ଗୋଟାଏ ଥାର୍ଡ଼କ୍ଲାସ କମ୍ପାର୍ଟମେଣ୍ଟକୁ ସଞ୍ଜି ଉଠି-ଯାଇ ଦେଖିଲା କମ୍ପାର୍ଟମେଣ୍ଟଟା ଭର୍ତ୍ତି ହୋଇ ନ ଥିଲେ ମଧ୍ୟ ସବୁ ବେଞ୍ଚଗୁଡ଼ିକ ଅଧିକୃତ ହୋଇ ସରିଛି । ଦୁଇଟି ବେଞ୍ଚରେ ଦୁଇଜଣ ବେଶ ଆରାମରେ ଶୋଇ ଯାଇଛନ୍ତି । ବାକି ଦୁଇଟି ବେଞ୍ଚ ପୂର୍ଣ୍ଣ । ଉପରେ ଯେଉଁଠି ଲଗେଜ୍ ରଖାଯାଏ, ଅଧିକୃତ କରିଛନ୍ତି କେତେଜଣ ଲୋକ । ଅଜି ଏ ବିଂଶ ଶତାବ୍ଦୀରେ ମଣିଷ କଣ ଲଗେଜ୍ ହୋଇଯାଇଛି ? ଉଚ୍ଚ ଶିକ୍ଷିତ, ସଭ୍ୟ ମଣିଷ କଣ ଲଗେଜ,

ଜନସଙ୍ଘନର ସ୍ଥାନ ପୂରଣ କରନ୍ତୁ ? ସେ କେତେ ସମସ୍ତ ରେଲ୍‌ଫାଣ୍ଡି ଠିଆ ହୋଇ ରହିଲା ।

ଟ୍ରେନ୍ ଚାଲିବା ପରେ ସଞ୍ଜି କବାଟ ବନ୍ଦକରି ଭିତରକୁ ଆସିଲା । ଝରକା ପଟେ ଥିବା ବେଞ୍ଚରେ ଯେଉଁ ଲୋକଟି ବେଣ୍ଡ୍ କଣ୍ଟିନ୍ୟୁରେ ଶୋଇଛି, ଦେହରେ ତାର ଗୋଟାଏ ମାଟିଆ ମଇଳା ହାଫ୍‌ପ୍ୟାଣ୍ଟ ଆଉ ଶସ୍ତା ତୁଳା କମ୍ବଳ ଗୋଟାଏ । ଆର ପଟ ବେଞ୍ଚରେ ଯେ ଶୋଇଛି ତାକୁ ବୟସ ବୟସ ଯାଏ ହେବ । ଦେହରେ ତାର ଟେରମ ସୁଟ । ହାତରେ ରିଷ୍ଟୱାଚ ।

ଝରକା ପାଖକୁ ଶୋଇଥିବା ଲୋକଟାକୁ ସଞ୍ଜି ହଲାଇ ଦେଇ କହିଲା, ହୋ, ମହାଶୟ, ଟିକିଏ କଷ୍ଟ କରି ଉଠିବେ କି ? ହୋ ମହଶୟ, ବାବୁ ଟିକିଏ ଉଠନ୍ତୁ ନା, ଟିକିଏ ଜାଗା—ହୋ ବାବୁ !

ଲୋକଟି ହଠାତ୍ ଉଠ ବସିଲା । ସଞ୍ଜି ଆଡ଼େ ଚାହିଁଲା । ଆଖିର ଚାହାଣୀ ତଳେ ସଞ୍ଜିକୁ ଧ୍ୱଂସ କରି ଦେବାର ଇଂଗିତ ଯେପରି ଲୁଚି ରହିଛି । ଲୋକଟା ଯଦି ମହାଦେବ ହୋଇଥାନ୍ତା, ତୁଏତ ବର୍ତ୍ତମାନ କପାଳରେ ତୃତୀୟ ଆଖି ବାହାର କରି ତାକୁ ଭସ୍ମ କରି ଦଅନ୍ତା ଏକ ମୁହୂର୍ତ୍ତରେ ! ସଞ୍ଜି ରକ୍ଷା ପାଇଗଲା । ଏଇ ବିଂଶ ଶତାବ୍ଦୀରେ ପ୍ରକୃତରେ ଯଦି ସବୁ ମହାଦେବ ଥାଆନ୍ତେ, ତେବେ କେତେ ଲୋକ ଯେ ହଠାତ୍ ଶୂନ୍ୟରେ ପରିଣତ ହୋଇ ଯାଉଥାନ୍ତେ କିଏ ତାର ହିସାବ ଦେବ ?

ଝରକା ବନ୍ଦ କରି ଦେଇ ସଞ୍ଜି ଚୁପ୍ ହୋଇ ବସିଲା ।

ତାହିଁକି ମତେ ପଚାରିଲ ?

ବସିବାକୁ ଜାଗା ନଥିଲା ।

ଲୋକଟା ପରି ଅଡ଼କୁ ଟିକିଏ ଅନାଇ କହିଲା, ଟିକେଟ୍ ଅଛି ତ ?

ଆପଣ କଣ ଟିକେଟ୍ ଚେକର ?

ତଥାପି ଜାଣିବାକୁ ଚାହୁଁଛ ?

ମୁଁ ସେ କଥା ଆପଣଙ୍କ ଆଗେ କହିବାକୁ ପ୍ରସ୍ତୁତ ନୁହେଁ ।

ଆପଣଙ୍କ ଘର ?

ପରି ନୀରବ ରହି ଖଣ୍ଡେ ସିଗାରେଟରେ ନିଆଁ ଲଗାଇଲା । ଅନ୍ୟଖଣ୍ଡେ ସିଗାରେଟ ବାହାର କରି ସେ ଲୋକକୁ ଯାଚିଲା, ମହାଶୟ କିଛି ମନେ କରିବେନି, ସିଗାରେଟ ଖଣ୍ଡେ ନିଅନ୍ତୁ ।

ସିଗାରେଟରେ ବିଷ ଦିଆ ହୋଇନାହିଁ ତ ?

ମୁଁ ଚୋର କିମ୍ବା ଡକାୟତ ନୁହେଁ ।

ଜାଣିଲି, କିନ୍ତୁ ସିଗାରେଟରେ ବିଷ ଦେବା ଆଜିକାଲିର ବହୁତ ହେଉଛି । ମୁଁ କିପରି ଜାଣିବି ଆପଣ ଭଦ୍ରଲୋକ !

ବିଶ୍ୱାସ ଯଦି ନ କରନ୍ତି, ତେବେ ମୋ ଅନୁରୋଧଟା ମୁଁ ଫେରାଇ ନେଉଛି ।

ବିଶ୍ୱାସରେ ତ ବିଷ ଦେବା ଖୁବ ସହଜ ।

ପରି ସିଗାରେଟଟିକୁ ଖୋଳ ଭିତରେ ପୂରାଇ ଦେଇ ପକେଟରେ ରଖିଲା । ଲୋକଟି କେତେ ସମୟ ଧରି ପରିକୁ ଅନାଇଲା, ତାପରେ କହିଲା, ଆପଣ କ'ଣ ପୂର୍ବବଙ୍ଗରୁ ଆସିଛନ୍ତି ? କଣା ପଡ଼ୁଛନ୍ତି, ନିଶ୍ଚୟ ହୋଇଥିବେ ।

ସଚ୍ଚି ଖୋଲିଥିବା ଝରକା ଦେଇରେ ଚାହିଁ କହିଲା, ହଁ ।

ଓଃ ତାହେଲେ—ଆପଣ କଣ ଇଣ୍ଟରଭ୍ୟୁକୁ ଯାଉଛନ୍ତି ?

ନିଶ୍ଚୟ !

ସଚ୍ଚି ଚାହିଁଲା ସେ ଲୋକଟା ଆଡ଼େ । ସେ ଲୋକର ମୁହଁରେ ଗୋଟାଏ ବିକୃତ ହସ ଫୁଟି ଉଠିଲା । ଦୁଇ ହାତ ଯୋଡ଼ି ନମସ୍କାର କଲା ଲୋକଟା । ତାପରେ ହାତ ଦେଖାଇ ମାଗିଲା, ବର୍ତ୍ତମାନ ଦେଇପାରନ୍ତି, ସିଗାରେଟ ଖଣ୍ଡେ ଖାଇବାକୁ ପ୍ରସ୍ତୁତ ଅଛି । ସିଗାରେଟ୍‌ରେ ନିଆଁ ଲଗାଉ ଲଗାଉ ଲୋକଟା କହିଲା, ମୋ ନାଁ ନୃପେନ୍ଦ୍ର ମିତ୍ର । ମୋ ଘର ପୂର୍ବବଙ୍ଗରେ, ମୁଁ ଆଶ୍ରୟପ୍ରାର୍ଥୀ । ଶୀତଦିନର ଏଇ ଶୀତରାତରେ ସିଗାରେଟ୍ ଖଣ୍ଡକର ମୂଲ୍ୟ କମ ନୁହେଁ ! ଓଃ ବାବୁ, ଆପଣଙ୍କ ନାଁଟା କଣ ?

ସଚ୍ଚିଦାନନ୍ଦ ବୋଷ ।

ସଚ୍ଚି ବାବୁ, ମୁହଁକୁ ଟିକେ ଆସନ୍ତୁ—ଖୁବ୍ ପାଖକୁ ।

ସଚ୍ଚି ତାଙ୍କର ଖୁବ ପାଖକୁ ଘୁଞ୍ଚିଗଲା । ନୃପେନ୍ଦ୍ର ବାବୁ କହିଲେ, ଆପଣ ବର୍ତ୍ତମାନ କେଉଁଠି ଅଛନ୍ତି ଜାଣିପାରିବେ କି ?

ଜଣକର ଘରେ ରହୁଛି ।

ମୁଁ ପ୍ରଥମେ ଥିଲି ଚକଦ୍ୱାରରେ, ଆଶ୍ରୟପ୍ରାର୍ଥୀମାନଙ୍କ ପାଇଁ ହୋଇଥିବା ସରକାରୀ ଘରେ । ପ୍ରତିଦିନ ଗଣ୍ଡାଏ ଖାଇବାକୁ ଯାହା ମିଳେ । ତାପରେ ଚାଲି ଆସିଲି ସେଠାରୁ । ପୂର୍ବବଙ୍ଗରେ ଥିଲି ବ୍ୟବସାୟୀ, ଆଉ ଏଠିକି ଆସି ଗଣ୍ଡାଏ ଭାତ ଖାଇ ମୁଁ ଚୁପ୍ ରହିପାରେ ? ଚାଲି ଆସିଲି ।

ସଚ୍ଚି ପାଖକୁ ଆଉ ଟିକିଏ ଘୁଞ୍ଚି ନୃପେନ୍ଦ୍ର ଆସି ପଚାରିଲା, ଟିକଟ କରିଛନ୍ତି ?

ସଚ୍ଚି ମୁଣ୍ଡ ହଲାଇ କହିଲା, ହଁ ।

ନୃପେନ୍ ମୁଣ୍ଡ ହଲାଇ କହିଲା, ବୋକା ଆପଣ !

କାହିଁକି ?

ବୋକା ନୁହନ୍ତି ? ସତ ଭଳିଆରେ ଗାଡ଼ିରେ ଚଢ଼ନ୍ତୁ ତ ଟିକେଟ ଚେକ୍ କରିବାକୁ ଆସିବନି । ଯଦି ବା ଆସେ ଶରଣାର୍ଥୀ କହିଲେ ନିଶ୍ଚୟ ଛାଡ଼ିଦେବ । ଗଭର୍ଣ୍ଣମେଣ୍ଟରୁ ମିଳୁଛି ପାଞ୍ଚଟଙ୍କା । ଏତିକ ଟଙ୍କାରେ କେତେଗୁଡ଼ାଏ ଟିକେଟ ଅନ୍ତତଃ କିଣାଯାଇ ପାରିବ ।

ନୃପେନ୍ଦ୍ର ସିଟରୁ ଉଠି ଅପରପାଖ ବେଞ୍ଚରେ ଶୋଇଥିବା ଲୋକଟିକୁ ଉଠାଇଲା । ଯୁବକଟି ବେଞ୍ଚ ଉପରେ ବସି ପଡ଼ିଲା । ସତି ଦିଗରେ ହାତ ଦେଖାଇ ନୃପେନ୍ଦ୍ର କହିଲା, ଏ ବି ପୂର୍ବ ବଙ୍ଗରୁ ଆସିଛନ୍ତି, ଇଣ୍ଟରଭ୍ୟୁରେ ଯାଉଛନ୍ତି । ଯୁବକଟି ଦୁଇହାତ ଆଙ୍ଗୁଳିରେ ଆଖି ଦୁଇଟିକୁ ମଳି ସତି ଆଡ଼େ ଚାହିଁଲା । ନୃପେନ୍ଦ୍ର କହିଲା, ୟାଙ୍କ ନାମ ହେଉଛି ସତି ବୋଷ, ଆଉ ସତିବାବୁ ୟାଙ୍କ ନାଁ ହେଉଛନ୍ତି ଅମରେନ୍ଦ୍ର ଗଙ୍ଗୋପାଧ୍ୟାୟ—ଅଳ୍ପରେ କହିବାକୁ ହେଲେ ଅମର ଗାଙ୍ଗୁଲି । ଏ ବି ପୂର୍ବ ବଙ୍ଗୀୟ । ଏ କଲିକତାରୁ ଭୂତତ୍ତ୍ୱ ସହ ବି. ଏସ୍. ସି ପାଶ କରି ନୋଆଖାଲିରେ ଚାକିରୀ କରୁଥିଲେ । ତାପରେ ଏବେ ଏଠାଠି ଅଛି । ଏ ବି ଚାଲି ଆସିଛନ୍ତି ସରକାରୀ ସାହାଯ୍ୟ କେନ୍ଦ୍ରକୁ ।

ଅମର ନମସ୍କାର କଲା ସତିଙ୍କୁ ଆଉ ସତି ପ୍ରତିନମସ୍କାର ଜଣାଇଲା ।

ନୃପେନ୍ଦ୍ର ଆସି ନିଜ ସିଟ୍ ଉପରେ ଯେଉଁ ଶସ୍ତା କମ୍ବଳ ଖଣ୍ଡିକ ଘୋଡ଼ାଘୋଡ଼ି ହୋଇ ବସିଲା । କହିଲା, ବୁଝିଲେ ସତି ବାବୁ,

ମୁଁ ପାଶ ମାଷ୍ଟ୍ରର୍ । ସେଥିପାଇଁ ଇଣ୍ଟରଭ୍ୟୁରୁ ଡାକରା ଆସିଚ, ନ ହେଲେ ଇଣ୍ଟରଭ୍ୟୁ କିଏ, ମୁଁ କିଏ ? ହଠାତ୍ ନୃପେନ୍ଦ୍ର କାନ୍ଦିବାକୁ ଆରମ୍ଭ କଲା । ସବି ପଚାରିଲା ଅମରକୁ । ଅମର କହିଲା, ତାଙ୍କର ମନେ ପଡ଼ୁଚି ତାଙ୍କ ଝିଅ କଥା ।

କିଛି ସମୟ ପରେ ନୃପେନ୍ଦ୍ର କାନ୍ଦ ବନ୍ଦ କରି କହିଲା, ମୋ ଝିଅ ଆରତି କଥା ମନେ ପଡ଼ିଲେ ଟିକିଏ କାନ୍ଦ ମାଡ଼େ । ବଣ ସାରା ଶେଷ ହୋଇ ଯାଇଥିଲେ, ବାକିଥିଲା ଆରତି, ତାକୁ ଆସିଲା-ବେଳେ କଲିକତା···ତା'ପରେ ତାପରେ···ପୁଣି କାନ୍ଦିବାକୁ ଲାଗିଲା । ତାପରେ ପୁଣି ଆରମ୍ଭ କଲା—କଲିକତାରେ ତାକୁ ବିକ୍ରୀ କରିଦେଲି ଗୋଟାଏ ପ୍ରଫେସରକୁ । ମତେ ପନ୍ଦରଶହ ଟଙ୍କା ଦେଇଥିଲା···ଦେଖିଲ ସବିବାବୁ ସେ ଟଙ୍କା କଣ ଏ ଦେହକୁ ସୁନ୍ଦର କରିପାରିଲା ନା ମୋଟା କରିପାରିଲା ? ଆରତି ସୁନ୍ଦରୀ ଆଉ ଗୁଣବତୀ ଝିଅଟିଏ ଥିଲା । କେତେ ଗୀତ ସିଲେଇ ଶିଖିଥିଲା । ମାଇନର ପାଶ କରି ମାଷ୍ଟ୍ରର୍ ଅଧାପାଏ ପଢ଼ିଥିଲା—ଶେଷରେ ପୁଣି ବିକା ହେଲା । ଆରତୀର ମାଂସ, ତାର ରକ୍ତ, ତାର ବୁଦ୍ଧି, ତାର ଘରକରଣା, ତାର ସୌନ୍ଦର୍ଯ୍ୟ, ତାର ଗୁଣ ସବୁ ବିକ୍ରୀ ହୋଇ ମୋତେ ମିଳିଲା ପନ୍ଦରଶହ ଟଙ୍କା ! ଅଧୁନିକ ସ୍ୱାଧୀନ ଭାରତର ଗୋଟିଏ ନାଗରିକର ବିକ୍ରୀ ଲବ୍ଧ ଧନ ଆଉ ଗୋଟାକୁ ନା ମୋଟା କରିପାରିଲା—ନା ସୌନ୍ଦର୍ଯ୍ୟ ଦେଇ ପାରିଲା ?

ସେ ପନ୍ଦରଶ ଟଙ୍କାରୁ ପୁଣି କଲିକତାରୁ ଆସିଲା ବେଳେ ଗୋଟିଏ ପକେଟମାରୁ ମାରିନେଲା ତିରିଶ୍ ଟଙ୍କା ! ଦିନ ପାଞ୍ଚଟା ଭିତରେ ଗୋଟିଏ ମଣିଷର ମୂଲ୍ୟ ଶେଷ ହୋଇଗଲା !

ସବି ମୁହଁ ଟେକି କହିଲା, କମ୍ ଆଶ୍ଚର୍ଯ୍ୟତ ନୁହେଁ !

ସେତକ ଟଙ୍କାରେ ଯଦି ବ୍ୟବସାୟ ଆରମ୍ଭ କରି ଦେଇଥାନ୍ତି ତାହେଲେ ଆଜ ହୁଏତ କିଛି ରୋଜଗାର ମୁଁ କରି ପାରୁଥାନ୍ତି । କିନ୍ତୁ କପରେ ଉପରେ ଉଡ଼ିଗଲା ସେ ଟଙ୍କା !

ଅମର ପଚାରିଲା, ଆଜ୍ଞା, ସଚ୍ଚି ବାବୁ, ଆପଣ କଣ ପାଶ୍ କରିଛନ୍ତି ?

ଏଇ, ଏମ୍. ଏ.······

ଏମ୍. ଏ. ?

ହଁ······

ଆପଣ ଆଗରୁ କଣ କରୁଥିଲେ ?

ପ୍ରଫେସର ଥିଲି ସେଠାରେ ।

କି ପ୍ରଫେସର ?

ଇତିହାସରେ ।

ନୃପେନ୍ଦ୍ର ଆଖିରୁ କମ୍ବଳରେ ଲୁହ ପୋଛି କହିଲା, ପ୍ରଫେସର ? ପ୍ରଫେସର ସବୁ ଚୋର, ବଦମାସ । କଲିକତାର ଭସ ପ୍ରଫେସର ଶିକ୍ଷିତ, ଧନୀ । ଦେଖିଲତ ତାକୁ ? ଆଉ ଗୋଟାଏ ପ୍ରଫେସର କଥା ଶୁଣିବ ? କଟକରେ, ତା ନା ପ୍ରଫୁଲ୍ଲ ପଟ୍ଟନାୟକ, ସେ ବି ଇତିହାସ ଅଧ୍ୟାପକ ଗୋଟାଏ । ଗଭର୍ଣ୍ଣମେଣ୍ଟ ଅଣ୍ଡର୍ ଜାଗାରୁ ପାଣି ଷ୍ଟେସନ ପାଖରେ ହୋଇଚି, ସେ ମତେ ଦେଖିଲା । ତା ମଟରରେ ବସାଇ ଘରକୁ ନେଇ ଦୁଇଦିନ ରଖି ଖାଇବା ପିଇବାକୁ ବି ଦେଲା । ଶେଷରେ ଦିନେ କହିଲି, ମତେ ଶହେଟା ଟଙ୍କା ଦିଅନ୍ତୁ, ମୁଁ ଗୋଟିଏ ବ୍ୟବସାୟ କରିବି । କହିଲା, ତମ ହୋଇ କି ବ୍ୟବସାୟ ହେବ ଶୁଣେ ?···ମାଛୁଆଡ଼ି ଜୁଆଡ ପୁଣି ବ୍ୟବସାୟ କରେ ।

କହିଲି, ଚହିବ ଯଦି ଗୋଟାଏ ଚେଂଜ ବ୍ୟବସାୟ କରିବ । ସ୍ତ୍ରା-
ଙ୍କଡ଼ରେ ନ୍ୟସ ରେଞ୍ଜି ହ୍ବଜ୍ବ । ହସିଲି, କହିଲି, ତାଠାରୁ ବରଂ ଆଉ
ଗୋଟାଏ ଭଲ କଥା କହୁଛି । କର, ଭଲ ହେବ । ମୋ ଘରେ
ଷ୍ଟେଷନ କର । ମୁଁ ମାସକୁ ପାଞ୍ଚଟଙ୍କା ଲେଖାଏ ଦେବି, ଆଉ
ପିନ୍ଧିବାକୁ, ଖାଇବାକୁ ଦେବି । ନୂଆ ହୋଇ ବାହା ହୋଇଛି ନା !
ତା ସ୍ତ୍ରୀର କୋମଳ ସୁନ୍ଦର ହାତ ଷ୍ଟେଷନ କଲେ ଲୁଅଟେ ନଷ୍ଟ
ହୋଇଯିବ ! ସେଦିନ ଖୁବ ଇଚ୍ଛା ହେଉଥିଲା—ସେଇଠି ତା
ବେକଟାକୁ ମୋଡ଼ି ଦେବାକୁ । ନିଶ୍ଚୟ ଦିନେନା ଦିନେ ତା ବେକ
ମୋଡ଼ିବି । ତାପରେ ମୁଁ କାହିଁ କଲାରୁ ଗୁଳିର ହାତରେ ଧରିବା
ହେଉ ଦୁଆରବନ୍ଧ ଏ ପଟେ ଛାଡ଼ି ଦେଇଥିଲା । ତାପରେ ହସି
ଉଠିଥିଲା ଖୁବ୍ ଜୋରରେ । ତାର ସେ ନିର୍ମମ ନିଷ୍ଠୁର ହସ
ଆଜିଯାଏ ମୁଁ ବି ଭୁଲି ପାରିନି । ଦିନେ ତାକୁ ଖୁଣ କରି ମୁଁ ବି
ହସିବି ସେପରି ହସ—ହାଃ—ହାଃ—ହାଃ, ଶିକ୍ଷିନି ନୃପେନ୍ଦ୍ର
ମିଶ୍ରଙ୍କୁ, ନା ?

ଅମର କହିଲା, ଏଇ ଉବାରେ ଯେତେକ ଅଛନ୍ତି, ସମସ୍ତେ
ପୂର୍ବବଙ୍ଗର, କେବଳ ଦୁଇଜଣଙ୍କୁ ଛାଡ଼ି । ସେ ଦୁଇଜଣ ପଶ୍ଚିମ
ଉଷ୍ଣୀବର—ସମସ୍ତେ ଗୁଳିଛନ୍ତି ସେଇ ଇଣ୍ଟରଭ୍ୟୁକୁ । ଇଣ୍ଟରଭ୍ୟୁକୁ
ଯାଇ ଯାଇ ଗୋଡ଼ରୁ ପାଣି ମଲାଣି । କିନ୍ତୁ ଗୁକିରି କାହିଁ ?

ସର୍ଜି କହିଲା, ଅଜକାଲି ଗୁକିରି ସିନା ଖାଲି ହେଲେ
ମିଳିବ । ଖାଲି ହେଉଛି କେଉଁଠି ? ପୁଣି ଏ ପ୍ରଦେଶରେ ଲୋକ-
ମାନଙ୍କୁ ତ ଗୁକିରି ଦିଆଯିବ ?

ସର୍ଜି ଗୋଟାଏ ସିଗାରେଟ୍‌ରେ ନିଆଁ ଲଗାଇ ଗୋଟାଏ
ସିଗାରେଟ୍ ନୃପେନ୍ଦ୍ରକୁ ଦେଲା । ଅମର ମନାକଲା ସିଗାରେଟ୍
ଖାଇବାକୁ । ସିଗାରେଟ୍ ଅଭ୍ୟାସ ତାର ନାହିଁ ।

ଅମର କହୁଲା, ପଶ୍ଚିମବଙ୍ଗ ତ ପଶ୍ଚିମ ବଙ୍ଗ ଲୋକଙ୍କ ପାଇଁ, ଆସାମ ତ ଆସାମ ମାନଙ୍କ ପାଇଁ; ବିହାର ବିହାରୀମାନଙ୍କର, ଓଡ଼ିଶା ଓଡ଼ିଆମାନଙ୍କର; ମାନ୍ଦ୍ରାଜ ମାନ୍ଦ୍ରାଜୀଙ୍କର । ତେବେ କେଉଁ ପ୍ରଦେଶ ରହୁଲା ଆଉ ଆମ ପାଇଁ ?

ନୃପେନ୍ଦ୍ର ସିଗାରେଟ୍ ଧୂଆଁ ଛାଡ଼ ଛାଡ଼ୁ କହୁଲା, କେବଳ ନୁହେଁ, ଭାରତ ସରକାର ମଧ୍ୟ ମନା କଲେଣି ଆଉ ଯଦି ଏଣିକି ଆଶ୍ରୟପ୍ରାର୍ଥୀ ପାକିସ୍ଥାନରୁ ଆସନ୍ତି ତେବେ ସେମାନଙ୍କୁ ଆଉ ସରକାର ସାହାଯ୍ୟ ଦେଇ ପାରିବେନି ।

ସର୍ଜି ଅନ୍ୟ ମନସ୍କ ଭାବରେ କହୁଲା, ଆଉ କେତେ ଦିନ ପରେ ହୁଏତ ଶୁଣିବେ ଆପଣମାନେ, ଏଇ ଶରଣାର୍ଥୀମାନଙ୍କ ପାଇଁ ପୃଥିବୀରେ ଆଉ ଜାଗା ନାହିଁ ।

ସେତେବେଳେ ହୁଏତ ଯିଶୁଙ୍କ ପରି ସ୍ୱର୍ଗ ଆଉ ମର୍ତ୍ତ୍ୟ ଭିତରେ ମଝିରେ ଝୁଲିବାକୁ ପଡ଼ିବ ଆମମାନଙ୍କୁ—ମର୍ତ୍ତ୍ୟ ତ ନାହିଁ କଲା, ଆଉ ଆମମାନଙ୍କ ଭଳି ପାପୀମାନଙ୍କ ପାଇଁ ସ୍ୱର୍ଗଦ୍ୱାର ହୁଏତ ବନ୍ଦ ! ଅମର କହୁଲା ।

ଆଉ ଜନ୍ମରେ କି ଅପରାଧ କରିଥିଲେ ଆମେ ? ନୃପେନ୍ଦ୍ର ପଚାରିଲା ।

ହୁଏ ତ ବହୁ ବେପାର କରିଥିଲେ ନ ହେଲେ କାହାକୁ ହଇରାଣ କରିଥିଲେ ।

ସର୍ଜି ପ୍ରତିବାଦ କଲା—ନା, ବିଂଶ ଶତାବ୍ଦୀରେ ଏହାକୁ ମୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହେଁ ।

ନୃପେନ୍ଦ୍ର ସର୍ଜି ପାଖକୁ ଘୁଞ୍ଚି ଆସି ଫୁସ୍‌ଫୁସ୍ କହୁଲା, ସେତେ-ବେଳେ ଜାହ୍ନବି କି ସିଗାରେଟ୍ ଖାଇବାକୁ ମନା କରୁଥିଲ ଜାଣିଚ ? କାରଣ ମୋ ପାଖରେ ଅଳ୍ପ କେଇ ସିଗାରେଟ !

ସଇ ଚମକି ଉଠି କହିଲା, ଏଁ ?

ଚୁପ୍ ଚୁପ୍, ପାଟି କରନା, ଶୁଣ ମୋ ପାଖରେ ଅଛି ବଡ଼ ସିଗାରେଟ । ଏଇ ସାଧାରଣ ସିଗାରେଟ୍ ଭିତରେ ବଡ଼ ଗୁଳି ଦିଆଯାଇଛି । ନହେଲେ ସାଧାରଣ ସିଗାରେଟ୍ ଆଉ ତା ଭିତରେ କିଛି ପ୍ରଭେଦ ନାହିଁ । ଏ ଉପାୟରେ ଯେତେଜଣ ଅଛନ୍ତି ସମସ୍ତେ ଆମର ଦଳର । ଦେଖିବ ବଡ଼ ସିଗାରେଟ୍ ? ପକେଟରୁ ଗୋଟାଏ ଗୋଲ୍ଡଫ୍ଲେକ୍ ସିଗାରେଟ୍ ପ୍ୟାକେଟ୍ କାଢ଼ିଲି ନୃପେନ୍ଦ୍ର । ସର୍ଜି ତା' ଭିତରୁ ଦୁଇ ତିନଟା ସିଗାରେଟ୍ ନେଇ କିଛି ସମୟ ପରୀକ୍ଷା କଲା । ତାପରେ ଫେରାଇ ଦେଲା ସିଗାରେଟ ପ୍ୟାକେଟଟା । ନୃପେନ୍ଦ୍ର ଡାହାଣ ପାଖ ପ୍ୟାଣ୍ଟ ପକେଟରେ ରଖିଲା ସିଗାରେଟ ପ୍ୟାକେଟଟା । କମ୍ବଳ ଭିତରୁ ବାହାର କଲା ଗୋଟାଏ ପିସ୍ତଲ । ସର୍ଜି ଅତର୍କିତେ ଚିତ୍କାର କରି ଉଠିଲା ।

ହାଣ୍ଡ୍ସ୍, କ'ଣ ଅଛି ଶୀଘ୍ର ବାହାର କର !

ସଇ ଦୁଇପାଦ ପଛକୁ ଘୁଞ୍ଚିଗଲା ।

ନୃପେନ୍ଦ୍ର ପାଟି କଲା, ଚୁପ, ଟ୍ରେନର ଲୋକଙ୍କୁ ଜାଣିବାକୁ ଚେଷ୍ଟା କରନାହିଁ ! ନୃପେନ୍ଦ୍ର ସର୍ଜି ଉପରେ ପିସ୍ତଲଟା ଦେଖାଇଲା— କଣ ଅଛି ବାହାର କର ଶୀଘ୍ର ।

ସର୍ଜି ଛାତି ପକେଟରୁ ଛ'ଟଙ୍କାର ଟଙ୍କିଆ ନୋଟ ଆଉ କଡ଼ ପକେଟରୁ ରେଜା ଦଶଣାଏ, ସିଗାରେଟ୍ ପାକେଟ ଓ ଜଣାଟା ବାହାର କରି ବେଞ୍ଚ ଉପରେ ଥୋଇଦେଲା ।

ନୃପେନ୍ଦ୍ର କହିଲା, ଆଉ କଣ ଅଛି ବାହାର କର ।

ସର୍ଜି ନୀରବ ରହି ମୁଣ୍ଡ ହଲାଇ ମନା କଲା ।

ଆଉ କଣ ଅଛି ବାହାର କର, ନ ହେଲେ—

ସର୍ଜି ଅନାଇଲା ପିସ୍ତଲର ଖୋଳା ଉପରେ ନୃପେନ୍ଦ୍ର ଅଙ୍ଗୁଠି ଦେଇଛି । ପିସ୍ତଲଟା ଟ୍ରେନ ଭିତର ଆଲୋକରେ ଜକ୍ ଜକ୍ କରୁଛି । ନୂଆ ପିସ୍ତଲଟା । ବନ୍ଧୁତା କରି ବେଶ ତ ବିଷ ଦିଅପାଇ ଶାରେ !

ହଠାତ୍ ସର୍ଜିର ମନେ ହେଲା, ପୃଥିବୀରେ ସମସ୍ତ ଦୁଃଖ ଭିତରେ ବଞ୍ଚି ରହିବା କି ସୁଖକର ! ହାତ ଯୋଡ଼ି କହିଲା, ମତେ ଛାଡ଼ ଦିଅ, ମାର ନାହିଁ—

ନୃପେନ୍ଦ୍ର ଦୃଢ଼ ସ୍ୱରରେ କହିଲା, କାହିଁକି ? ବଞ୍ଚିବାକୁ ଚାହୁଁ ?

ହଁ ।

କାହିଁକି ? ଅଣସ୍ପୃଶ୍ୟ ହୋଇ ଏତେ ଦୁଃଖ କଷ୍ଟରେ କାହିଁକି ବଞ୍ଚି ରହିବାକୁ ଚାହୁଁ ? କେଉଁଥିପାଇଁ ? ତାଠାରୁ ବରଂ ପିସ୍ତଲର ଏଇ ଗୁଳିରେ ମରିବା ଭଲ । ଏକ ମୁହୂର୍ତ୍ତ ମଧ୍ୟରେ ତୁଟିଯିବ ସମସ୍ତ ଦୁଃଖ, ଦୁର୍ଦ୍ଦଶା, ଯନ୍ତ୍ରଣା, ରୋଗ ଶୋକ, ସମସ୍ୟା— କଣ ମରିବାକୁ ଚାହୁଁ ନାହିଁ ?

ସର୍ଜି ବ୍ୟାକୁଳ ଆଖିରେ, ଅନୁନୟ ଚାହାଣୀରେ ଅନେଇ ରହିଲା ନୃପେନ୍ଦ୍ର ଆଡ଼କୁ । ନୃପେନ୍ଦ୍ର ପୁଣି ଖାଟି ହେଲା— କହ, ଶୀଘ୍ର କହ, କାହିଁକି ବଞ୍ଚିବାକୁ ଚାହୁଁ ?

ସର୍ଜି ଅସ୍ପଷ୍ଟ ଭାବରେ କହିଲା, ବଞ୍ଚିବାକୁ ଚାହେଁ, କିନ୍ତୁ ଜାଣେନା···ତାପରେ ପାଟିରୁ ଆଉ କଥା ବାହାରିଲାନି । ପାଟି ଭିତରୁ ଜିଭଟାକୁ କିଏ ଯେପରି ଓଟାରି ନେଲା ।

ଶାଳା କହ !

ସର୍ଜି ଦେଖିଲା ସମସ୍ତ କମ୍ପାର୍ଟମେଣ୍ଟଟି ପିସ୍ତଲର ସେଇ ମୁହଁ ମଧ୍ୟରେ ଲୀନ ହୋଇ ଯାଇଛି ଯେପରି ! ସେଇ ପିସ୍ତଲର ଗହ୍ୱର

ଭିତରୁ ବାହାରି ଆସିବ ଗୁଳି···ଗୋଟିଏ ମୁହୂର୍ତ୍ତରେ ଶେଷ ହୋଇଯିବ ଅଧ୍ୟାପକ ସଙ୍ଗେ ବୋଷ···ଇତିହାସ ଅଧ୍ୟାପକ ସଙ୍ଗେ ବୋଷ, ଗବେଷକ ସଙ୍ଗେ ବୋଷ ଏବଂ ଆଶ୍ରୟପ୍ରାର୍ଥୀ ସଙ୍ଗେ ବୋଷ !

ପ୍ରତିମାର ପଶିଲ ପଶିଲ ଆଖିରୁ ଝରି ପଡ଼ୁଛି ଦୁଇଧାର ଲୁହ । ସେ କହୁଛି, ଏତେ ଦୁଃଖ ଭିତରେ ମତେ ଛାଡ଼ିଗଲ ? ସେଆଡ଼ୁ ଆସିଲା ମଣ୍ଟୁ, କାନ ଧରି ଭଣ୍ଡା ନେଲା ପ୍ରତିମାର । ସ୍ୱାମୀ ମରିଗଲା ବୋଲି ଏତେ ଦୁଃଖ କାହିଁକି ? ମୁଁ ତ ଅଛି । ପ୍ରତିମା କହିଲା, ବଦମାସ୍,ଏ ଏତେ ସାହସ ? ମଣ୍ଟୁ ଧକ୍କା ଦେଇ ବାହାର କରିଦେଲା ସେଠୁ ବାହାରକୁ । ସରୋଜକୁ ଠେଲି ଦେଲା ଗୁଣ୍ଡାଏଟା । ଖଣ୍ଡେ ଇଟା ବାଜି ଝୁଣ୍ଟି ପଡ଼ିଲା ସରୋଜ । ଫଣ୍ଟୁ ମୁହଁ ଫେଟି ରକ୍ତ ଧାର ବହୁ ବୋହିଲା । ପ୍ରତିମା କାଖେଇ ନେଲା ସରୋଜକୁ । ସରୋଜ ପ୍ରତିମା ଛାତିରେ ମୁହଁ ଲୁଚାଇ କାନ୍ଦିଲା । ପ୍ରତିମା ସ୍ୱାମୀ କଥାକୁ ଭୁଲିଲା । ଆଖିର ଲୁହରେ ସରୋଜର ମୁହଁ ଓଦା ହୋଇଗଲା । ପଣତ କାନିରେ ନିଜ ଆଖିରୁ ଲୁହ ପୋଛିଲା । ପ୍ରତିମା ଭାବିଲା, ଏତେ ଦୁଃଖ ପୁଣି ପଛକୁ ରହିଥିଲା ? କେଉଁ ଦିନ କୌଣସି ଅଭାବ ଅସୁବିଧାକୁ ପ୍ରତିମା ଆପତ୍ତି କରି ନାହିଁ, ନୀରବରେ ସହିଯାଇଛି, ଆଜି ଏ ଦୁଃଖକୁ ହୁଏତ ନୀରବରେ ସହିନେବ । ନା—ନା, ସେ ମରିବାକୁ ଚାହେଁ ନାହିଁ । ସେ ବଞ୍ଚିବାକୁ ଚାହେଁ, ସେ ବଞ୍ଚିବ ଏତେ ଦୁଃଖ ଭିତରେ । ଏତେ ଯନ୍ତ୍ରଣା ,ରୋଗ ଶୋକ ଭିତରେ ସେ ବଞ୍ଚିବ···ମଣିଷପରି ହୋଇ ନ ପାରେ, ପଶୁ ପରି ହୋଇ ନ ପାରେ, ସେ ବଞ୍ଚିବ ଠିକ୍ ପୃଥିବୀର ସବୁଠାରୁ ହୀନ ଶ୍ରେଷ୍ଠ ପ୍ରାଣୀ ପରି । କିନ୍ତୁ ସେ ମରିବାକୁ ଚାହେଁନା, ସେ ବଞ୍ଚିବ ଏଇ ପୃଥିବୀରେ, ଏଇ ଦୁଃଖ ଶୋକର ପୃଥିବୀରେ, ଏଇ ଅଭାବ ଅସୁବିଧାର ଜୀର୍ଣ୍ଣ ପୃଥିବୀ ଉପରେ, ଜୀର୍ଣ୍ଣ ଭାବରେ । ଛାତିରୁ ତାହାର ବାହାରିଲା, ନା, ନା ମୁଁ ମରିବାକୁ ଚାହେଁ ନା, ମୁଁ

ବଞ୍ଚିବ, ମତେ ମାର ନାହିଁ ! ନୃପେନ୍ଦ୍ର ଓ ଅମର ଉଚ୍ଚେ ହସି ଉଠିଲେ ଏକ ସଙ୍ଗରେ—ହାଃ—ହାଃ—ହାଃ । ସଢ଼ିର ଦେହ ଭେଦ କରି, କମ୍ପାର୍ଟମେଣ୍ଟ, ସମସ୍ତ ଟ୍ରେନ, ସନ୍ଧିର ନିସ୍ତବ୍ଧତା ଓ ବାହାରର ଘନକୃଷ୍ଣ ଅନ୍ଧକାର ଭେଦ କରି ସେ ହସ ଭାସିଗଲା ଯେପରି କେଉଁ ଦୂର ଦୂରାନ୍ତକୁ । ସମସ୍ତେ ଯେପରି ଏକ ସଙ୍ଗରେ ହସି ଉଠିଲେ—ହାଃ—ହାଃ—ହାଃ— । ଯେଉଁ ଅଧ୍ୟାପକ ସଢ଼ି ଦୋଷ ଇତିହାସ ଗବେଷଣା ଛାଡ଼ି ଅର୍ଥପ୍ରାର୍ଥୀ ହୁଏ, ପୁଣି ଯେଉଁ ଅର୍ଥପ୍ରାର୍ଥୀ ସଢ଼ି ଦୋଷ ମନୁଷ୍ୟତ୍ୱକୁ, ବନ୍ଧୁତ୍ୱକୁ ନିର୍ମମରେ ହତ୍ୟା କରିପାରେ, ସେ ସଢ଼ି ଦୋଷ ବଞ୍ଚିବାର ଦରକାର କଣ ? ନା, ସଢ଼ି ଦୋଷ ମରିବ, ମରିବ ଆଜ ମିଶିଯିବ ଏଇ ମାଟି ସଙ୍ଗରେ ଚିରଦିନ ପାଇଁ । ଛବି ଆସି ଯେପରି ଆଗରେ ଆସି ଠିଆ ହେଲା । କହିଲା, ମତେ ତମେମାନେ ଉଦ୍ଭ୍ରାନ୍ତ କରି ମାରିବ, ତମେ ମରିବ ନାହିଁ ! ନିଶ୍ଚୟ ମରିବ । ଯେଉଁ ସୁନ୍ଦର ଶ୍ୟାମଳ ପୃଥିବୀରେ ମତେ ବଞ୍ଚିବାକୁ ଦେଇ ନାହିଁ, ସେ ପୃଥିବୀରେ ତମେ ବଞ୍ଚି ରହି ଆନନ୍ଦ ଉପଭୋଗ କରିବ କାହିଁକି ? ତମେ ମରିବ, ଆଜ ସଢ଼ି ଦୋଷକୁ ନିଶ୍ଚୟ ହତ୍ୟା କରିଯିବ···ଏ କାହାର ମୁହଁ ? ଚୈତ୍ରାଣକ । ସୁଧାଂଶୁ ! ସୁଧାଂଶୁ ଗର୍ଜି ଉଠିଲା—ମୁଁ ତତେ ବନ୍ଧୁ ବୋଲି ଗ୍ରହଣ କରିଥିଲି··· ଶେଷରେ ବିଶ୍ୱାସଘାତକତା କରି ମୁଁ ଶୋଇଥିବାବେଳେ ଦରଖାସ୍ତଟା ଚୋରିକରି ନେଇଚୁ ? ହଉ ଆଜ୍ଞ ତୋର ରକ୍ତ ମୁଁ ଏ ଟେଷ୍ଟଟ୍ୟୁବରେ ପରୀକ୍ଷା କରିବି, ଲୋକ କେତେ ବିଶ୍ୱାସଘାତକତା କରେ ବନ୍ଧୁତ୍ୱର ସ୍ୱାର୍ଥରେ ତାହା ଦେଖିବି । ତେଣୁ ତୋର ମୃତ୍ୟୁ ଅତି ଆବଶ୍ୟକ । ପ୍ରତିମାର ଲମ୍ବ ତଳ ତଳ ଆଖି ଦୁଇଟି ଭାସି ଉଠିଲା, ତା ପରେ ସରୋଜର ଶ୍ରେଷ୍ଠ କୁଞ୍ଚନ, ପାଂଶୁଳ ମୁହଁ । ସରୋଜ ଅଟିଲା ଥରିଲା କଣ୍ଠରେ କହିଲା, ବାପା ମୋ' ଆଠ'ଣା ନେଇଚ' ନା ? ସଢ଼ି

ଚାକର କହିଉଠିଲା, ନା, ନା ମୁଁ ମରିବାକୁ ଚାହେଁ ନା—ମୁଁ ବଞ୍ଚିବି— ।

ନୃପେନ୍ଦ୍ର ଆଉ ଥରେ ହସି ଉଠି କହିଲା, ଯାଅ ତମକୁ ଛାଡ଼ି ଦିଆଗଲା ।

ସରିତ ନୃପେନ୍ଦ୍ରର ଦୁଇ ହାତକୁ ମୁଠାଇ ଧରି କହିଲା, ସତେ, ଆପଣମାନେ ଛାଡ଼ି-ଦେଉଛନ୍ତି ?

ନୃପେନ୍ଦ୍ର ପିସ୍ତଲଟା କମ୍ବଳ ଭିତରେ ଲୁଚାଇ ହସି ହସି କହିଲା, ହଁ ଛାଡ଼ିଦେଲୁ ଆପଣଙ୍କୁ । ଏଥର ପକେଟରେ ଟଙ୍କା ଆଉ ସିଗାରେଟ କେସ୍‌ଟା ରଖି ଦିଅନ୍ତୁ ।

ସରିତ ନୀରବରେ ପକେଟରେ ରଖିଦେଲା ସେସବୁ ।

ଅମର କହିଲା, ଆକ୍ଟିଂଟା ମନ୍ଦ ନୁହେଁ ଆପଣଙ୍କର ! ମୁଁ ଯଦି ଗୋଟାଏ ସିନେମା କମ୍ପାନୀରେ ଡାଇରେକ୍ଟର ହୋଇଥାନ୍ତି, ସାଙ୍ଗେ ସାଙ୍ଗେ ନୂତନ ଫିଲ୍ମ ପାଇଁ ଆପଣଙ୍କ ସଙ୍ଗେ କଣ୍ଟ୍ରାକ୍ଟ କରି ବସନ୍ତି । କିନ୍ତୁ ଆପଣଙ୍କର ଦୁର୍ଭାଗ୍ୟ ଯେ ମୁଁ ଗୋଟାଏ ଆଶ୍ରୟ-ପ୍ରାର୍ଥୀ, ଆଉ ସରିତବାବୁ ବି ଜଣେ ଶରଣାର୍ଥୀ । ବାସ୍ତବିକ ବଡ଼ ସୁନ୍ଦର ଅଭିନୟ କରି ପାରନ୍ତି ଆପଣ !

ସରିତ ଅମରର ମୁହଁକୁ ଚାହିଁ କହିଲା, କଣ ? ଅଭିନୟ ?

ଅମର ହସି ହସି କହିଲା, ଅଭିନୟ ନୁହେଁତ ଆଉ କଣ ?

ନୃପେନ୍ଦ୍ର କହିଲା, ଶୁଣ ସରିତବାବୁ, ଆଜି ଆମେ କେତେ ଜଣ ମିଶି ଗୋଟାଏ ଦଳ ଗଢ଼ିଛୁ, ତା ନା ଦେଇ ନିଃଶଙ୍କ ଦଳ । ଏ ଦଳର କାମ ହେଉଛି ରାତିରେ ସୁଟ୍ ପିନ୍ଧି ଟ୍ରେନରେ ଡକାଏତି କରିବା, ଆଉ ଦିନରେ ଛିଣ୍ଡା ପ୍ୟାଣ୍ଟ ମଇଳା ହାଫ୍ ପ୍ୟାଣ୍ଟ ମଇଳା ହାଫ୍ ସାର୍ଟ ପିନ୍ଧି ଆଶ୍ରୟପ୍ରାର୍ଥୀ ସାଜିବା···ଆଉ ସେଥିରେ ବଞ୍ଚି ରହିବା !

ସତି ଅନ୍ୟମନସ୍କ ଭାବରେ ଉତ୍ତର ଦେଲା, ଜେ୍ଜାବ କରିବା କଣ ଠିକ୍ ?

ନୃପେନ୍ଦ୍ର ସାଟି କଲା, ନା, ଚୋରି କରିବାକୁ ମୁଁ ପସନ୍ଦ କରେନା, ମୋ ମତରେ ଯେ ଜେ୍ଜାବ କରେ ସେ ଖାନ୍ଦ୍ରା ବାଟମାରୁ, ଡକାଏତକୁ ମୁଁ ପସନ୍ଦ କରେ ।

ସତି କହିଲା, ଜୀବନରେ ଆଉ କିଛି ଦେଖ କଣ ନାହିଁ ?

ଅମର କହିଲା, ମଣିଷକୁ ଯେତେ ଦିନ ତାର ବଳିଷ୍ଠ ଭାବରେ ବଞ୍ଚିବାର ଅଧିକାରରୁ ବଞ୍ଚିତ କରାଯାଏ, ତେବେ ସେ ଯେପରି ହେଲେ ଦୁର୍ଦ୍ଧର୍ଷ ବଳିଷ୍ଠ ଆଉ ସୁନ୍ଦର ଭାବରେ ଏଇ ଶ୍ୟାମଳ ପୃଥିବୀର ଅସ୍ତିତ୍ୱରେ ଚେଷ୍ଟା କରିବ ବଞ୍ଚିବାକୁ । ଆଉ ତାର ପରିଣତି ସ୍ୱରୂପ ଆମେ କେତେ ଜଣ ହୋଇ ଉଠିଚୁ ଡକାଏତ…

ନୃପେନ୍ଦ୍ର କହିଲା, କଣ ଆମ ଦଳରେ ଯୋଗ ଦେବ ନା ଏମିତି ଛନ୍ନଛଡ଼ା ହୋଇ ବୁଲୁଥିବ ? ପିଲା ମାଇପ ବାହାର ଗୋଳମାଳ କରୁଥିବେ, ବାହା ବାରଣ୍ଡାରେ କୁକୁର ପରି ଶୋଇଥିବ, ଆଉ ପିନ୍ଧିଥିବ ଛିଣ୍ଡା କାମିଜ, ମଇଳା ଚିରା ଲୁଗା ?

ଅମର କହିଲା, ନା ସେ ଏମ. ଏ. ପଢ଼ିଛନ୍ତି । ଅଧ୍ୟାପକ ହୋଇଥିଲେ । ହୁଏତ ତାଙ୍କର ଅନ୍ତର କେତେ ବଡ଼ ଅଭିଳାଷ ଥିବ—

ପକେଟରୁ ସତି ଖଣ୍ଡେ ସିଗାରେଟ କାଢ଼ି ନିଆଁ ଲଗାଇଲା । ଅମର ଦେଖି ତଳକୁ ନଇଁପଡ଼ି ପାଟିକଲା—ଏ, ଏ ବେଶ୍ ! ବାଃ ବାଃ !

ତାର ଉତର ବର୍ଷର ଗୋଟିଏ ଝିଅ ବାହାରି ଆସିଲା ବେଶ ତଳୁ ଆଖି ମଳି ମଳି । ସତି କହିଲା, ମୁଁ ଦେଖି ନ ଥିଲି, ବେଶ ତଳେ ଶୋଇ ଥିଲା ନା ?

ଅମର ଚନ୍ଦ୍ରଲ, ଏ ମୋର ଭଉଣୀ ରେଣୁ । କୌଣସି ଦେଶରେ ଜାଗା ନ ଥିବ, ଆଉ ସତରେ ଯଦି ବାହାରେ ଶୁଣେ କୌଣସି ଭଦ୍ର, ଶିକ୍ଷିତ ବ୍ୟକ୍ତିଙ୍କର ଯଦି ଏମ୍ୱା ଉପରେ ଦୃଷ୍ଟି ପଡ଼େ, ହୁଏତ ମୋଠାରୁ ଅଲଗା କରି ନେବେ ! ବଡ଼ ଭଉଣୀ ଯାଇଛି ଭାଇ ଯାଇଛି, ସମସ୍ତେ ଯାଇଛନ୍ତି, ଆଉ ରହିଛି ଏଇଟି । ସେଥିପାଇଁ ସବୁ ନଜରରେ ରଖିଥାଏ ମୁଁ ତାକୁ । ସ୍ୱାଧୀନ ହିନ୍ଦୁସ୍ଥାନର ପ୍ରତି ଅଂଶରେ ପ୍ରତି ନଗରରେ ପ୍ରତି ପଲ୍ଲିରେ, ଶିକ୍ଷିତ ସଭ୍ୟ ସମାଜରେ ଲୁଚି ରହିଛନ୍ତି ପାକିସ୍ଥାନୀ ଗୁଣ୍ଡାଙ୍କଠାରୁ ଅଧିକ ଭୀଷଣ, ଅଧିକ ହିଂସ୍ର ଗୁଣ୍ଡା ! ପାକିସ୍ଥାନୀ ଗୁଣ୍ଡାମାନେ ବଳର ଜୋରରେ ଅପହରଣ କରିଛନ୍ତି କେତେ ନାରୀଙ୍କୁ ! କିନ୍ତୁ ଏମାନେ ? ଏମାନେ କେବଳ ବଳ ନୁହେଁ, ନିଜର ବିଦ୍ୟା ବୁଦ୍ଧି, ଅଧିକାର, ସମ୍ମାନ, ଆଉ ପ୍ରତିପତ୍ତି ଓ ଧନର ଜୋର ଖଟାଇ, ଆଉ ତା'ର ବଳରେ ଧରି ନିଅନ୍ତି ଅସଂଖ୍ୟ ନାରୀଙ୍କୁ, ଯୁବତୀଙ୍କୁ, ତରୁଣୀଙ୍କୁ । ସ୍ୱାଭାବିକ କାମ ପ୍ରବୃତ୍ତି ଅଧମ ଅଶିକ୍ଷିତ, ଅସଭ୍ୟ ବର୍ବର ଲୋକମାନଙ୍କ ଠାରୁ ଶହେ ଗୁଣରେ ଅଧିକ ।

ନୃପେନ୍ଦ୍ର, ଚନ୍ଦ୍ରଲ, ରେଣୁ ଏ ବାବୁଙ୍କୁ ନମସ୍କାର କର ।

ରେଣୁ ନମସ୍କାର କଲା । ଚାହିଁ ରହିଲି ରେଣୁକୁ । ରେଣୁର ଦେହରେ ଆଦ୍ୟ ଯୌବନର ଶ୍ରୀ ଫୁଟି ଉଠିଛି ଅତି ସ୍ୱାଭାବିକ ଭାବରେ । ଯୌବନର ମଦିର ମଧୁର ପରଶରେ ଦେହର ପ୍ରତି ଅଂଶରେ ଫୁଟି ଉଠିଛି ଯେଉଁ ରୂପଶ୍ରୀ, ତାହା ଯେପରି ମାନିବାକୁ ଚାହେଁନା ପୃଥିବୀର ନିୟମତାନ୍ତ୍ରିକ ଶାସନ । ସେ ବଢ଼ିଯିବାକୁ ଚାହେଁ, ଫୁଲର ଗନ୍ଧ ପରି ଚାରି ଦିଗରେ ନିଜର ସ୍ୱାଭାବିକ ଛନ୍ଦରେ, ଦିଗ ଦିଗନ୍ତରେ ସୌନ୍ଦର୍ଯ୍ୟ ଫୁଟାଇ ଫୁଟାଇ । ରେଣୁର ଦେହରେ ଯୌବନର ଯେଉଁ ଆଦ୍ୟ ଶ୍ରୀ ଫୁଟି ଉଠିଛି, ସେ ଯେପରି ମାନିବାକୁ ଚାହେଁନା ଯେ ସେ ଗୋଟାଏ ଶରଣାର୍ଥିନୀ ବାଳିକାଠାରେ ଆତ୍ମପ୍ରକାଶ କରିଛି !

ସ୍ୱର୍ଗୀୟ ସୌନ୍ଦର୍ଯ୍ୟର ମୂଲ୍ୟ କିଏ ଦେବ ? ସେ ସୌନ୍ଦର୍ଯ୍ୟ ହୁଏତ ମରିବ ଜୀବନ ସଂଗ୍ରାମର କୋଳାହଳ ଭିତରେ, ରୁଟି ଆଉ ଭାତର ଅନ୍ୱେଷଣ ଭିତରେ । ତରୁଣୀ ରେଣୁ ଆଉ କେତେ ବର୍ଷ ପରେ ପାଲଟି ଯିବ ବୁଢ଼ୀ ପ୍ରତିମା···ଯୌବନର ସମସ୍ତ ସ୍ୱାଧୀନ ଭାରତର ଜନ୍ମସ୍ତବରେ ଖୁବ୍ କମ ।

ଅମର କହିଲା, ରେଣୁକୁ ବର୍ତ୍ତମାନ ଚାହୁଁଛି ଗୋଟାଏ ଥିଏଟର ପାର୍ଟିରେ । କାରଣ ମୁଁ ତ ସବୁ ସମୟରେ କପାଳେ ରହୁଥାନ୍ତି, ଏ ବୟସରେ ପ୍ରଲୋଭନ ତ କମ ନୁହେଁ । ମୁଁ ତାକୁ ପ୍ରଲୋଭନରେ ପଡ଼ି ନିଜର ଜୀବନକୁ ନଷ୍ଟ କରିବାକୁ ଦେବନାହିଁ । ତେଣୁ ଚାହେଁ ଦେଇତ ଗୋଟାଏ ଥିଏଟର ପାର୍ଟିରେ । କାର୍ଯ୍ୟବ୍ୟସ୍ତ ରହିଲେ ପ୍ରଲୋଭନ ହୁଏତ ଆସି ପାରିବନି ସହଜରେ । ତାପରେ ଅଭିନୟ କଲେ ମନୁଷ୍ୟ ଅନେକ ସମୟରେ ଭୁଲିଯାଏ ବାସ୍ତବକୁ । ଯାହେବ ବାସ୍ତବ ବି ଅଭିନୟ ପରି ଖାଲି ମିଛ । ରେଣୁ ସେଇ ପାର୍ଟିରେ ଟିକିଏ ଅଭିନୟ କଲା ।

ରେଣୁ ପଚାରିଲା, କୋଉ ପାର୍ଟି ?

ସେଇ ପାର୍ଟି—ଚମ୍ପାର ଭୂମିକାଟା ଭଲ ଦେଖି ।

ରେଣୁ ସଙ୍ଗିକୁ ଚାହିଁଲା । ଅମର କହିଲା, ବେଶ୍ ତ, ସଙ୍ଗିକୁ ଚାହିଁ କର ।

ରେଣୁ କିନ୍ତୁ ସମସ୍ତ ସଙ୍ଗିର ମୁହଁକୁ ଚାହିଁଲା, ତାପରେ ଆରମ୍ଭ କଲା,···ତମେ ମତେ ଅବିଶ୍ୱାସ କରୁଚ ? ତମେ ଭାବୁଚ ମୁଁ ଛଳନା କରୁଚି ? ନା, ନା, ମୁଁ ତମକୁ ପ୍ରକୃତରେ ଭଲପାଏ ପ୍ରିୟ ! ମୁଁ ତମକୁ କେତେ ଭଲପାଏ ! ଗଭୀର ରାତିରେ ମୁଁ ଝରକା ପାଖେ ଯାଇ ଠିଆ ହୁଏ ! ଆଖିରେ ମୋର ନିଦ ନଥାଏ । ବାହାରକୁ ଚାହେଁ, ବାହାରେ

ପଡ଼ିଥାଏ ଜ୍ୟୋତ୍ସ୍ନା, କି ସୁନ୍ଦର ! ଦୂରରୁ ମଳୟ ବହେଁ ଏକ ମଧୁର
ଫୁଲର ମଦିର ଗନ୍ଧ ବାନ୍ଧୁ ଶୁଣୁଥାଏ । ଦୂରରୁ ଭାସି ଆସୁଥାଏ
ବଂଶୀରେ ଗୋଟାଏ କରୁଣ ସ୍ୱର । ମୁଁ ଭାବେ ତମେ ଯେପରି
ଜ୍ୟୋତ୍ସ୍ନାର ଏଇ ଢ଼େଉ ଭିତରେ ଆସିଚ ! ଆସିଚ ମତେ ନେବା ପାଇଁ ।
ତମେ ଯେପରି କହୁଚ, ସ୍ୱପ୍ନା ! ଆମେ ଦୁହେଁ ଚାଲିଯିବା ଏଇ
ଜ୍ୟୋତ୍ସ୍ନା ଦେଇ ବହୁତ ଦୂରକୁ, ଯେଉଁଠାରେ ନ ଥିବ ପୃଥିବୀର
ଏଇ ଭୀଡ଼ ପାଇଁ କୋଳାହଳ । ସେଠାରେ ଖାଇବାର ଚିନ୍ତା କିଛି
ନ ଥିବ, ସେଇ ନିର୍ଜନ ଭୂଇଁରେ ଗୋଟିଏ କୁଡ଼ିଆ ତୋଳିବା । ତମେ
ହେବ ସେଥିରେ ରାଣୀ ଆଉ ମୁଁ ରାଜା······ନା, ନା, ତମେ
ଭୁଲିବାକୁ କହୁଚ ମତେ ? କିପରି ଭୁଲିବି ଏଇ ବିଗତ ଅତୀତକୁ ?
ମନେ ରଖିବା ଯେତେ ସହଜ, ଭୁଲିବା ସେତେ ସହଜ ନୁହେଁ ।
କିନ୍ତୁ ମୁଁ ତମକୁ ଭଲ ପାଏ । ମୋର ପ୍ରାଣ, ମୋର ଦେହ, ମୋର
ମନ ତମକୁ ଭଲପାଏ······ଯିବ ? ଚାଲିଯିବ ? ଯାଅ, ଦୁଃଖ ନାହିଁ ।
ଜୀବନର ଅବଶିଷ୍ଟାଂଶ କଟାଇ ଦେବି ତମର ସ୍ମୃତିରେ···ନା, ଭାଇ
ଆଉ ମନେ ପଡୁନି ! ନୂଆ ହୋଇ ନାଟକଟା ହୋଇଚି କି ନା···

ସଞ୍ଜି ଆଡ଼ୁ ମୁହଁ ଫେରାଇ ଅମର ଆଡ଼େ ରେଣୁ ଚାହିଁଲା ।
ସଞ୍ଜିର ମନେ ହେଉଥିଲା ସତେ ଯେପରି ରେଣୁ ତାର ପ୍ରେମରେ
ପଡ଼ି ଯାଇଚି । ବେଶ୍ ତ ସୁନ୍ଦର ଅଭିନୟ କରିପାରେ ରେଣୁ !
ରେଣୁକୁ ଯଦି କମଳର ପାର୍ଟଟା ଦେଇଥାନ୍ତା, କି ସୁନ୍ଦର କରିଥାନ୍ତା
ମତେ ! ହୁଏତ ସଞ୍ଜି ଆଉ ସ୍ୱପ୍ନମାକୁ ବ.ହା ହୋଇ ନ ଥାନ୍ତା !

ଅମର ପଚାରିଲା, କେମିତି ଲାଗିଲା ପାର୍ଟଟା ?

ଚମତ୍କାର ! ଏତେ ସୁନ୍ଦର ଅଭିନୟ କରିପାରେ ! ଜଣାପଡୁଚି
ଯେମିତି ସତରେ ସେ କହୁଚି ।

ଦେଖ୍ ସେମାନଙ୍କ ଯଥେଷ୍ଟ ।

ସଙ୍ଗି ଅମରଙ୍କୁ ପରେ ଆଉ ରେଣୁଙ୍କୁ ପରେ ଚାହିଁ କହିଲା, କିନ୍ତୁ ମୋର ବାହୁଁଙ୍କ ମନେ ହୁଏ ଆପଣ ଏ ଯେଉଁ ଏକ୍ସପେରିମେଣ୍ଟ ରେଣୁଙ୍କୁ ନେଇ କରୁଚନ୍ତି ହୁଏତ ଆପଣ ବିଫଳ ହୋଇପାରନ୍ତି ।

ଅମର ହସିଲା, ବିଫଳ ହେଉ ବା ସଫଳ ହେଉ, ବିଫଳ ହେଲେ ପୁଣି ନୂଆ ପ୍ଲାନ୍ ପାଇବନି ତ ଆଉ ଏକ୍ସପେରିମେଣ୍ଟ କରିବା ପାଇଁ । ଯଦି ବିଫଳ ହୁଏ ମନରେ କିନ୍ତୁ ଗୋଟାଏ ଖୁବ୍ ବଡ଼ ଧରଣର ଆଘାତ ଲାଗିବ—

ସଙ୍ଗି କହିଲା, ତେବେ ଏଡ଼େ ବଡ଼ ଏକ୍ସପେରିମେଣ୍ଟ ମୋଟେହେଲେ କାହିଁକି କରିବାକୁ ଗଲେ ?

ରିସ୍କ ନେଇଚି, ଦେଖାଯାଉ । ଯାହାହେଉ ପିଲାଟା ଆମ କାମକୁ ବେଶ ଆସିବ । ଏହାର ସାହାଯ୍ୟ ପାଇଲେ ଆମ କାର୍ଯ୍ୟ ଖୁବ ସୁବିଧାରେ ଆଉ ସହଜରେ ହୋଇ ପାରିବ ।

ନୃପେନ୍ଦ୍ର କହିଲା, ଯା ରେଣୁ, ରାତି ଅନିଦ୍ରା ହୁଅନା, ଶୋଇ-ପଡ଼ । ରେଣୁ ପୁଣି ବେଞ୍ଚ ତଳକୁ ଯାଇ ଶୋଇ ପଡ଼ିଲା ।

ଅମର କହିଲା, ଆଉ କିଛିଦିନ ପରେ ଭାବୁଛି ଏ ଲାଇନ୍‌ରେ ତାକୁ ଟ୍ରେନିଂ ଦେଇଦେବି । ତାପରେ ଉପଯୁକ୍ତ ଗୁରୁର ବେଶ୍ ଉପଯୁକ୍ତ ଶିଷ୍ୟଣୀ ହୋଇ ଉଠିବ ସେ । ନିଖିଲ ସଂଘ ବି ବେଶ୍ ଗୁଲିବ । ନିଖିଲ ସଂଘର ନିୟମାବଳୀ ସବୁ କଣ ଜାଣନ୍ତି ? ଶୁଣନ୍ତୁ, ନିଖିଲ ସଂଘରେ ନିୟମ ରହିଛି ଯିଏ ନିଖିଲ ସଂଘରେ ମେମ୍ବର ହେବାପାଇଁ ଇଚ୍ଛା କରିବ, ସେ ଦିନକୁ ୬୦ ଗଜ ସୂତା କାଟି ପାରୁଥିବା ଦରକାର । ନିଜ ହାତରେ ପାଇଖାନା ସଫା

କରୁଥିବା ଦରବାର । ଆଉ ସତ୍ୟ, ଅହିଂସାରେ ଚାଲୁଥିବା ଦରବାର । ଆଉ ଗାନ୍ଧିଙ୍କ ସର୍ବଧର୍ମ ଶାନ୍ତି ପାଇଁ ପ୍ରଭାତ ପାଠ-ଶାଳା ପାଠ ସମୟରେ ଆଦାୟ କରି ପାରୁଥିବା ଦରବାର । ଏସବୁ ସେ କରସାରିକି ସେ ସଂଘର ମେମ୍ବର ହୋଇ ପାରିବ । ନିଶ୍ଚୟ ସଂଘର ଆଇନକାନୁନ ଛପା ହୋଇଛି । ଆଉ ବର୍ଷ ଏଣୁ ସଂଘ ଉଦ୍‌ଘାଟନ କରିବା ପାଇଁ ମାନ୍ୟବର ପ୍ରଧାନମନ୍ତ୍ରୀଙ୍କୁ ନିମନ୍ତ୍ରଣ କରିଥିଲୁ । ମାନ୍ୟବର ପ୍ରଧାନମନ୍ତ୍ରୀ ଉଦ୍‌ଘାଟନ କରି ପ୍ରଥମେ ଦେଇଥିଲେ ପାଞ୍ଚ-ଶହ ଟଙ୍କା । ତା ପରେ ଦୁଇକିସ୍ତିରେ ବାକି ପାଞ୍ଚଶହ ଟଙ୍କା ଦେବେ ବୋଲି କହିଥିଲେ ଓ ଦେଇ ସାରିଲେଣି ମଧ୍ୟ । ନିକଟରେ ଏ ସଂଘକୁ ମାସିକ ସରକାରୀ ସାହାଯ୍ୟ କିଛି ମିଳିବ । ଏଥିରେ ଆମର ଗଳି ସିଲନରେ ଥୋଡ଼ାଏ ଲୋକ ତ ଅନ୍ତତଃ ପୋଷା ହୋଇ ଯାଇବେ ।

ସର୍ଜି ହସିଲା । କହିଲା, ବେଶ୍ ତ ! ଏଥିରୁ ରକ୍ଷା ପାଇବା ପାଇଁ ବେଶ୍ କରକଟାଏ ତ ତିଆରି କରିଚ !

ନୃପେନ୍ଦ୍ର କହିଲା, ଆମ ସଂଘ ଅତେ, କିଛି ଗଲେ ଥରେ ଅନ୍ତତଃ ବୁଲିଯିବାକୁ ଭୁଲିବେ ନାହିଁ । ଏଥର ରାଜୀ ଇନ୍ଦ୍ରାଣୀଙ୍କୁ ମାନ୍ୟବର ଲାଟଙ୍କୁ ଡାକୁଚୁ । ଅମର ବେଞ୍ଚ ଉପରେ ଶୋଇ ପଡ଼ିଲା । ନୃପେନ୍ଦ୍ର ବେଞ୍ଚରେ ଅଧିକରେ ଶୋଇପଡ଼, କହିଲା, ରାତି-ଶେଷ ହେବ ବୋଧହୁଏ । ଟିକିଏ ନ ଶୋଇଲେ, ଇଣ୍ଟରଭ୍ୟୁଙ୍କୁ ଯିବା କିପରି ? ସରକାରୀ ଚିଠିଟା ମିଳିବ ବୋଲି ଯିବା କଥା । ନ ହେଲେ ୯ଭଳି ହଜାରଟା ଗୁରୁକଉକୁ ବର୍ତ୍ତମାନ ଆମେ ଯେ ଉଡ଼ରେ ଠେଲି ଦେଇ ପାରିବୁ ! ଆସ୍ତ ଆପଣଙ୍କୁ ତ ଶୀତ ହେଉଥିବ,

ଗୋଟାଏ ଗରମ କୋଟ ଉପହାର ଦେଇଥିଲେ । ହଠାତ୍ ମୁଣ୍ଡରେ ଗୋଟାଏ ଲଙ୍ଗ୍ ଗରମ ଓଭରକୋଟ ବାନ୍ଧି ଦେଇଥିଲେ । ସେହି ଅପରାହ୍ନରେ ସେ ଗରମ କୋଟଟି ନେଇ ପିନ୍ଧିଲା । ନୃପେନ୍ଦ୍ର ବେଞ୍ଚ ଉପରେ ଶୋଇ ପଡ଼ିଲା ।

କିଛି ସମୟ ପରେ କମ୍ପାର୍ଟମେଣ୍ଟଟି ନୀରବ ହୋଇ ଗଲା ।

ଗୋଟାଏ ଟ୍ରେନ୍ ଷ୍ଟେସନରେ ଗାଡ଼ି ରହିଲା । କମ୍ପାର୍ଟମେଣ୍ଟ ଭିତରକୁ ପଶି ଆସିଲେ ଦୁଇଜଣ ଲୋକ । ଗୋଳମାଳ ଶୁଣି ନୃପେନ୍ଦ୍ର ବେଞ୍ଚ ଉପରକୁ ଉଠି ପାଟିକଲା, ବାହାରିଯାଅ କହୁଛି ! ଲୋକ ଦୁଇଟା ଭିତରକୁ ପୁଣି ପଶିବାକୁ ଚେଷ୍ଟା କଲେ । ନୃପେନ୍ଦ୍ର ସିଟ୍‌ରୁ ଉଠି ଦୁଇ ହାତରେ ସେମାନଙ୍କୁ ବାହାରକୁ ଠେଲି ଦେଇ ଭିତରୁ ଦ୍ୱାର ବନ୍ଦ କରି ଦେଲା ।

ଟ୍ରେନ୍ ଷ୍ଟେସନର ପ୍ଲାଟଫର୍ମ ଛାଡ଼ି ଚାଲିଲା ।

ଝରକାଟି ଖୋଲିଦେଲା ହରି । ପୂର୍ବ ଦିଗରେ ଶୁକତାରାଟା ଜକ୍ ଜକ୍ କରୁଛି । ଆଉ କିଛିଏ ଗଲେ ସକାଳ ହେବ । ଓଃ, ପାଟିରେ ଘା ହୋଇଛି । ଅନେକ ଦିନ ଧରି ସିଗାରେଟ୍ ଖାଇବାର ଅଭ୍ୟାସ ନଥିଲା । ଆଜି ଏକାଥରକେ ଏତେଗୁଡ଼ାଏ ସିଗାରେଟ୍ ଟାଣି ଦେବାରୁ ଏମିତି ଲାଗୁଛି । ନାକରୁ ପାଣି ଗଡ଼ିବା ଆରମ୍ଭ ହୋଇଛି । ଶୀତରେ, କାକରରେ ଏତେ ରାତି ଅପେକ୍ଷା କରିବା ଉଚିତ୍ ନୁହେଁ । ଚାର୍ଜ୍ ପରରୁ ସେ ଯେତେବେଳେ ଗଛ ମୂଳେ ବସିଥିଲା କାକରରେ ଶୀତରେ, ସେତେବେଳେ ତ ହେଉ ନ ଥିଲା ସର୍ଦ୍ଦି !

ଗ୍ଲାଡର ଶେଷ ଅଂଶରେ ଯେମିତି ସେତେବେଳକାର ଭଗ୍ନାଳୁର ଅବସ୍ଥା ବଢ଼ି ଯାଉଛି । କାହିଁକି ! କି ଭୟଙ୍କର ! ନୃପେନ୍ଦ୍ର ଆଜକୁ ବନ୍ଧୁକର ଯଦି ସେପରି କରିଥାନ୍ତା ! ଗ୍ଲାଡରେ ରମଣ

ରହିଯାଉଛି । ମୁଣ୍ଡ, ଦେହ, ହାତ ସେତେବେଳକୁ ଥରୁଛି । ଥରା ଏତେବେଳଯାଏ ବି ସମ୍ପୂର୍ଣ୍ଣ ରୂପେ ବନ୍ଦ ହୋଇନାହିଁ ।

ଫଟିକ ବାହାରକୁ ଥରେ ଥରେ ଚାହିଁଲା । ବାହାରେ ଅନ୍ଧକାର । ଅନ୍ଧକାର ଭିତରେ କିଛି ଦେଖାଯାଉ ନାହିଁ । ଟ୍ରେନ ଛୁଟିଛି କ୍ଷିପ୍ର-ଗତିରେ ।

କିଶଙ୍କୁ ସଂଘରେ ସେ ଯୋଗ ଦେବ ? ଦିନବେଳା ସୂତା-କାଟି, ଗାନ୍ଧିସ୍ମୃତି ପାଣ୍ଠି ପାଇଁ ପଇସା ଆଦାୟ କରି, ରାତିରେ ଡକାୟତି କରିବ ?

ସୂର୍ଯ୍ୟଜଗତର ସେ ଶୁକତାରାଟା ଜକ୍ ଜକ୍ କରୁଛି । କେତେ ସହସ୍ର, କେତେ କୋଟି ବର୍ଷତଳେ ହୁଏତ ଶୁକତାରା ନିକଟରେ ଅସୁର ଅନେକ ବଡ଼ ବଡ଼ ତାରା ଥିଲେ, କିନ୍ତୁ ନିଜର ଆଧିପତ୍ୟ ବିସ୍ତାର କରିବାପାଇଁ ଶୁକତାରା ସେମାନଙ୍କୁ ଗୋଟି ଗୋଟି କରି ହତ୍ୟା କରିଛି । ସୁଦୂର ଆକାଶର ସେଇ ପ୍ରାନ୍ତରେ ଛୋଟ ଛୋଟ ତାରାଙ୍କର ହୁଏତ ଗୁପ୍ତ ଆନ୍ଦୋଳନ ଚାଲିଛି, ଶୁକତାରା ବିରୁଦ୍ଧରେ । ତାର ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ଆନ୍ଦୋଳନ । ହୁଏତ ପରାମର୍ଶ ଚାଲିଛି, ମୂଷାପରି ତଳେ ତଳେ ସୁଡ଼ଙ୍ଗ କାଟି କେଉଁଠି ପରାମର୍ଶ-ଦାତା କମିଟିର ବୈଠକ ବସିବ ।

ନିଶଙ୍କୁ ସଂଘରେ ଯୋଗ ଦେବ ?

ମନ କଣ ? ସେତେବେଳେ ରିକ୍ସାରେ ବସି ଯେଉଁ ମୋଟା ଲୋକଟା ଯାଉଥିଲା, ସେ ରିକ୍ସାରେ ଯାଇପାରିଲା କିପରି ? ଅଧ୍ୟାପକ ପ୍ରଫୁଲ୍ଲ ପଟ୍ଟନାୟକ ମଟର କିଣିଲେ କିପରି ? ପାରାସାଇଟ୍ ପରି ଅନ୍ୟର ରକ୍ତ ଶୋଷଣ କରି ନିଜର ଦୁର୍ବଳତାକୁ, ନିଜର ଦୋଷକୁ ଗଣ-ତନ୍ତ୍ରର ଆଖିରୁ ଲୁଚାଇବା ପାଇଁ ସେମାନେ କିଛି ନା କିଛି ପ୍ରୁଫ୍ ବା

ସାଙ୍ଗ ଉପର ଭର ନେଉଛନ୍ତି । ଆଉ ନିଶଙ୍କୁ ଫଶ ପଡ଼ ସୂତା କଟାକୁ ପ୍ରମୁଖ କରେ, ତେବେ କ୍ଷତି କଣ ?

ଆକାଶର ପୂର୍ବଦିଗରେ ଶୁକ୍ରତାରା ବେଶ ଉଜ୍ଜ୍ୱଳ ଦେଖା ଯାଉଛି । ଶୁକ୍ରଟା ଗୋଟାଏ ତାରା କି ଗ୍ରହ ? ଶୁକ୍ର ଗ୍ରହ । ଶୁକ୍ର ଗ୍ରହଟା ବେଶ୍ ଉଜ୍ଜ୍ୱଳ ଦେଖାଯାଉଛି । ସେ ହୁଏତ ତାର ପ୍ରତିପତ୍ତି ବିସ୍ତାର କରି ପାରୁଛି ବୋଲି ଖୁସି ହେଉଛି । କିନ୍ତୁ ତା ବିରୁଦ୍ଧରେ ଯେଉଁ ଷଡ଼ଯନ୍ତ୍ର ଚାଲିଛି, ସେ ତାର କଣ ସନ୍ଧାନ ପାଉଛି ?

ନିଶଙ୍କୁ ଫଶ ।

ସୂତା କାଟିବା ଯାହାର ନିୟମ, ଉଦ୍ଭାବନ କରିବା ତାହାର ଧର୍ମ ।

ଅଧ୍ୟାପକ ଟେବେଶକ ସଚ୍ଚିଦାନନ୍ଦ ବୋଷ ଆଉ ସର୍ଜ ଇତିହାସ ଗବେଷଣା ଛାଡ଼ି ଉଦ୍ଭାବନ କରେ, ତେବେ କ୍ଷତି କଣ ? ଅଧ୍ୟାପକର କାମ ଗବେଷଣା କରିବା—ଏଇଟା ନିହାତି ପୁରୁଣା କଥା । ଅଧ୍ୟାପକ ଯଦି ଉଦ୍ଭାବନ କରେ ତେବେ କଣ ତାହା ଅତି ଆଧୁନିକ ହେବ ନାହିଁ ?

ଓଃ ! ସେ କି ପରିଶ୍ରମ ! ବିଶ୍ୱବିଦ୍ୟାଳୟରେ ସ୍ଥାନ ଅଧିକାର କରିବା ପାଇଁ ଧନ ଖର୍ଚ୍ଚ କି ପରିଶ୍ରମ ! ସେତିକି ପରିଶ୍ରମ ଯଦି ଖଟାଯାଇଥାନ୍ତା ଗୋଟାଏ ରାଜନୀତି ଦଳ ପଛରେ ତେବେ ସେ ରାଜନୀତି ଦଳଟା ନିଶ୍ଚୟ ଏଥିଭିତରେ ଖୁବ୍ ନାଆଁ କରି ପାରନ୍ତାଣି । କିନ୍ତୁ ଏତେ ପରିଶ୍ରମ, ଏତେ ଅଧ୍ୟବସାୟର ଶେଷ ପରିଣତି ହେଲା କଣ ? ଗୋଟାଏ ସାର୍ଟିଫିକେଟ୍ ମିଳିଥିଲା । ଏତେ ଅଧ୍ୟବସାୟ ଆଉ ପରିଶ୍ରମର ମୂଲ୍ୟ କଣ ଗଣ୍ଡେ ଦୁଇ ସାର୍ଟିଫିକେଟ କାଗଜ ? ଯେଉଁ ପରିଶ୍ରମରେ ହୁଏତ ଗୋଟାଏ ନୂତନ ସୁନ୍ଦର

ପୃଥିବୀ ମୁଣ୍ଡ ଟେକି ପାରିଥାନ୍ତା, ସେ ପରିଶ୍ରମର ପୁରସ୍କାର ଭଳି କେତେଟା ଦସ୍ତଖତ ଆଉ କେତେଟା ଗ୍ଲାସ ଅନ୍ତର ? ମଣିଷର ପରିଶ୍ରମର ଗ୍ଲାସ କ'ଣ ଏତେ ସସ୍ତା ?

ଦୁନିଆର ସବୁ ସୌନ୍ଦର୍ଯ୍ୟ ଭୁଲି, ଜୀବନର ସବୁ ମାଧୁର୍ଯ୍ୟ ଫିଙ୍ଗିଦେଇ ସେ ପରିଶ୍ରମ କରିଥିଲା ନିଜସ୍ୱ ପାଠଶାଳାରେ । ସେଥିପାଇଁ କମଳକୁ ସେ ହରେଇଛନ୍ତି । ସେଥିପାଇଁ ସେ ହସୁଛନ୍ତି ତାର ଆଦର୍ଶର ଜନନୀ ଛବି ଆଗାକୁ ।

ଏତେ ସବୁ ଜନତାର ପ୍ରତିଦାନ ସ୍ୱରୂପ ମିଳିଥିଲା ଯେଉଁ କାଗଜ ଗଣ୍ଡିକ, ସେ ଗଲା କୁଆଡ଼େ ? ଗୋଟାଏ ମୁହୂର୍ତ୍ତରେ ହୁଏତ ଶୂନ୍ୟରେ ପରିଣତ ହୋଇ ଯାଇଛି !

ଅଧ୍ୟାପକ ସଡି ରୋଷ, ଯଜ୍ଞାତର ସେ ମୂଲ୍ୟବାନ ସମସ୍ତ ଏତେ ପାଠଶାଳାରେ ନଷ୍ଟ ନକରି ଯଦି ଅନ୍ତତଃ ଘାସ କାଟିଥାନ୍ତେ, କିମ୍ବା ଜଙ୍ଗଲରେ କାଠ ସଂଗ୍ରହ କରିଥାନ୍ତେ, ତେବେ ହୁଏତ ଭାରତରେ ବର୍ତ୍ତମାନ ଦୁଧ ଆଉ ଅନ୍ୟ କୌଣସି ଏକ ଜିନିଷର ଉତ୍ପାଦନ ସାମାନ୍ୟ ପରିମାଣରେ ବଢ଼ିଥାନ୍ତା । ଇତିହାସ ! ଭବିଷ୍ୟତର ଇତିହାସ ଭଳି ଲେଖା ହୋଇ ପାରେନା ? ଯାର ଏକପରି, ଶ୍ରୀକଣ୍ଠଙ୍କର ମୃତ୍ୟୁ ହେବ, ତାର ସ୍ଥାନ ନେବ 'ଓ' ଶ୍ରୀଦ !

ତ୍ରିଶଙ୍କୁ ସ୍ୱର୍ଗ !

ଶୁଚିତାସ୍ମିତା ଲିଭିଆସିଲା, ଏଇ ଲିଭିଗଲା । ତାଙ୍କୁ ହତ୍ୟାକରି ଦେଲେ ଷଡ଼ଯନ୍ତ୍ରକାରୀଗଣ !

ସକାଳ ହୋଇ ଆସିଲା !

—ପାଞ୍ଚ—

ସର୍ଜି ପଢ଼ୁଥିଲା ବେଳକୁ ସୁଧାଂଶୁ ବାବୁ ପଛପଟ ବଗିଚାରେ ଥିଲେ । ସର୍ଜି ଗଲା ବଗିଚାକୁ ।

ସୁଧାଂଶୁ ବାବୁ ସର୍ଜିକୁ ଦେଖି କହିଲେ, କାଲି କୁଆଡ଼େ ଯାଇଥିଲେ କି ?

ସର୍ଜି ଉତ୍ତର ଦେଲା, ଇଣ୍ଟରଭ୍ୟୁରେ ଯାଇଥିଲି ବରହମପୁର, ଆଜି ସକାଳେ ତ ଫେରି ପଡ଼ୁଥିଲି ।

ସୁଧାଂଶୁ ବାବୁ ହସି ହସି କହିଲେ, ହୁଁ, ଇଣ୍ଟରଭ୍ୟୁକୁ କ୍ଲାଇଣ୍ଟ ହେଉଛି ତ ଟମର ଦାନ ଯିବ ! ତାଠାରୁ ବରଂ ଘାସ ବୁଣ ଭଲ । ଘାସ ବୁଣାର ପ୍ରସ୍ପେକ୍ଟ୍ସ ଭବିଷ୍ୟତରେ ବହୁତ୍ ଉଜ୍ଜ୍ୱଳ । ଏଣୁ ଦେଖ, ମୁଁ କାଫସ୍ ଗବେଷଣା କାମ ଛାଡ଼ି ଆରମ୍ଭ କରିଛି ଏଇ ଘାସ ବୁଣା !

ସର୍ଜି ଆଶ୍ଚର୍ଯ୍ୟ ହୋଇ କହିଲା, ତାହେଲେ ଆପଣ କଣ ସେ ଗୋମସ୍‌ର ଗବେଷଣା ଛାଡ଼ିଦେଲେ ?

ସୁଧାଂଶୁ ବାବୁ କହିଲେ, ନାଇଁ ସମ୍ପୂର୍ଣ୍ଣ ରୂପେ ଛାଡ଼ି ନାହିଁ । କିନ୍ତୁ ମୋର ସମୟର ବେଶିଭାଗ ଆଜିକାଲି କଟାଉଛି ଫୁଲ ବୁଣାରେ, ବାକି ସମୟ ଯଦି ମିଳେ, ତେବେ ସେ ଗୋମସ ଗବେଷଣାଟା ଦେଖେ ନହେଲେ ନାହିଁ ।

ଏତେ ଶୀଘ୍ର କାହିଁକି ଛାଡ଼ି ଦେଲେ ଗବେଷଣାଟା ?

ଶୀଘ୍ର କଣ, ଡକ୍ଟର କଣ ? ଗୋମସ୍ ଗବେଷଣା କରି କି ମଜ୍ଜା ଅଛି ? ତାଠାରୁ ବରଂ ଏଇ ଉଦ୍ୟାନରେ ଯେଉଁ ଗୋଟିଏ ଲୁଣି ପ୍ରଦର୍ଶନୀ ହେବ, ସେଠାରୁ ଯଦି ଟେବେଲ ସୁନ୍ଦର , ଟ୍ରଫିଏ

ନେଇପାରେ, ତେବେ ଢେଟେଡ଼ା ପୁରସ୍କାର ଅନ୍ତତଃ ମିଳିବ । ଗବେଷଣା କଲେ ହୁଏତ ଶେଷରେ କପାସ ଶୋଇବାକୁ ପଡ଼ିବ ।

ସୁଧାଂଶୁ ବାବୁ ତାସରେ ଗୀତକର ଫୁଲମଞ୍ଜି ଢେଟେଡ଼ା ପୋତିବାକୁ ଆରମ୍ଭ କଲେ । ସଙ୍ଗି ଠିଆହୋଇ ଅନାଇଲା ବଗିଚାଟା ଆଡ଼େ । ସୁଧାଂଶୁ ବାବୁଙ୍କ ଘର ପଛପଟେ ଯେ ସୁନ୍ଦର ବଗିଚାଟାଏ ଅଛି ସେକଥା ସେ ଜାଣିନଥିଲା । ବଗିଚାର ଠିକ୍ ମଝିରେ ରହିଛି ଛୋଟ ପୋଖରୀଟାଏ । ସୁଧାଂଶୁ ବାବୁ ମଞ୍ଜି ପୋତି ସାରି ଠିଆହେଲେ । କହିଲେ, ଆସନ୍ତୁ ମୋ ସଙ୍ଗେ ଟିକିଏ ବଗିଚାଟା ଦେଖିଯିବେ । ସଙ୍ଗି ଚାଲିଲା ପଛେ ପଛେ । ପୋଖରୀରେ ହାତ ଧୋଇ ଧୋଇ ସୁଧାଂଶୁ ବାବୁ କହିଲେ, ବୁଝିଲେ, ମୁଁ ନାଁ ଦେଇଛି ମିନତି ଲେକ୍ । ମିନତି ମୋର··ମାନେ ପତ୍ନୀ···ଠିକ୍ କାଲକାଟାର ଛୋଟ ଛୋଟ ପୋଖରୀ ଯେଉଁମାନଙ୍କ ନାମ ବି ଲେକ୍, ଏଇଟା ଠିକ୍ ସେଇଭଳି ହୋଇନି ? ମିନତି ଏହାର ନାଁ ଦେଇଥିଲେ ସୁଧାଂଶୁ ପୁଲ୍···ହାଃ···ହାଃ···ସେ ରହିଛନ୍ତି ବାହୁଁ କେଉଁ ସିକ୍ସଟିନ୍‌ଥ ସେନ୍‌ଚୁରୀରେ,—ଅଙ୍କ ବିଂଶ ଶତାବ୍ଦୀରେ ଆମକୁ ହେବାକୁ ପଡ଼ିବ ବିଶାଳ, ଆମର ହୃଦୟ ହେବ ବିଶାଳ, ଆମର ଚିନ୍ତା, ଆମର ଭାବ, ଆମର ପୋଖରୀ, ଆମର ଘର ସବୁ ବିଶାଳ ହେବା ଦରକାର । ଛୋଟ ପୋଖରୀ ପଛେ ହେଉ ତାର ନାମ ହେବ ଲେକ୍ । ଏଥିରେ କି ମହତ୍ତ୍ୱ, ବିଶାଳତ୍ୱର ପରିଚୟ ମିଳୁଛି । ଆଉ ପୁଲ୍, ସିକ୍ସଟିନ୍‌ଥ ସେନ୍‌ଚୁରୀ ଆଇଡ଼ିଆ । ମିନତି ଯେ ଏତେ ଶତାବ୍ଦୀ ପଛରେ ପଡ଼ିଛନ୍ତି ମୁଁ ସେଦିନ ଯାଏ ଜାଣିନଥିଲି ! ଦୁହେଁ ଏସ୍ପା ଭିତରେ ଲେକ୍ ପୋଖରୀର ପାହାଚ ···ଁ ବଗିଚାର ଯେଉଁ ଅଂଶରେ ସିଜନ୍ ଫ୍ଲାୱାର୍ ଲଗାଯାଇଛି, ··· ପାଖି ସାରିଥିଲେ ।

ଭାଇ, ଭାଇ !

ସୁଧାଂଶୁ ବାବୁ ଆଉ ସହି ରହୁଁଲେ । ଏତ ଆଧୁନିକତା ବହୁଣଛିଏ ପଣିଅଛୁଛ । ସୁଧାଂଶୁ ବାବୁ କହୁଲେ, ଏ ମୋର ଭଉଣୀ ଧର୍ମମିତ୍ରା, କଲେଜରେ ପଢୁଛ ଦ୍ବିତୀୟ ବର୍ଷ ! ମିନା, ଏ ବାବୁଙ୍କୁ ନମସ୍କାର କୁଅ ।

ମିନା ସହି ବାବୁଙ୍କ ହାତଟା ନିଜ ହାତରେ ଗୁପି ଦେଇ କହିଲା, ଶୁଭଦନ ମି: ଅପରଚିତ ! ଭାଇ, ନମସ୍କାର କରିବାଟା ଏକକାଳ ପରିଣତ ହୋଇ ଯାଇଛ ଅତୀତରେ । ବର୍ତ୍ତମାନର ନମସ୍କାର ଅଛ ଚଳବଣ—

ସୁଧାଂଶୁ ବାବୁ ହସି ହସି କହିଲେ ତୁ ଯେତେବେଳେ ଆମେଇ ରହଲରୁ, ମୋର ମନେ ହେଉଛ ଦନେ ତୁ କହିବୁ, ଭାଇ ମୁଁ ବେମିତ ଅତୀତରେ ପରିଣତ ହୋଇଯାଇଛ । ମତେ ବର୍ତ୍ତମାନ କର, ମତେ ନୂତନ କର ! ସମୟକୁ ପଛରେ ପକେଇ ଆଗରେ ଧାଇଁବାର ଚେଷ୍ଟା କଣ କମ ସାହସ ?

ସହି ଏମାନଙ୍କର କଥାବାର୍ତ୍ତା ଶୁଣି ମନେ ମନେ ହସିଲା । ମିନାର ଏତ ଆଧୁନିକତାରେ ସେ ବିସ୍ମିତ ହେଲା । ଦୁନିଆ ଆଗେଇ ଚାଲିଛ ପ୍ରତି ମୁହୂର୍ତ୍ତରେ, ଅଉ ସେ ହୁଏତ ପଡ଼ିଯାଉଛ ପଛରେ !

ମିନା ଗୋଟାଏ ମୋଟା ବହି ଖୋଲି ସୁଧାଂଶୁ ବାବୁଙ୍କୁ ଦେଖାଇ କହିଲା, ଆଚ୍ଛା, ଭାଇ କହିଲ ମିଃ ଧର୍ମସେନଙ୍କର ଏଇ ଲାଇନ୍‌ଟା ଜଗନ୍ନାଥ ଦେଉଳ ବିଷୟରେ—

ସୁଧାଂଶୁ ବାବୁ ଟିକିଏ ବିରକ୍ତ ହେଲାପର କହିଲେ, ସେଇ ଦନ କହିଥିଲି ମିନା, ସବୁ ବିଷୟରେ ସ୍ଥାନ ଓ ସମୟ ଜ୍ଞାନ ଟିକିଏ

ଥିବା ଦରକାର । ବର୍ଗେସ୍ଙ୍କରେ ଏଇ ଗୁଣ୍ଟାବେଳେ ଇତିହାସ ଚର୍ଚ୍ଚା ? ମୁଁ ଦେଖୁଚି ତୁମେତ ତୁ ତୋର କାର୍ଯ୍ୟରେ ପଚେଇ ଗୁଲଥିଲେ ମଧ୍ୟ, ଅବଧାନରେ ତୁମେତ ଊନବିଂଶ ଶତାବ୍ଦୀରେ ରହିଯାଇଚ ! ତା ପରେ ସେଦିନ ଏସ କହୁଥିଲି, ଆଉ ତୁ କଣ ଜାଣିନୁ ? ମୁଁ ଇତିହାସ ଛାତ୍ର ନୁହେଁ ଆଉ ମୁଁ ବରଂ ଇତିହାସକୁ ଘୃଣା କରେ ।

ସତି ହଠାତ୍ ପଚାରିଲା, କାହିଁକି ?

ମୁଁ କହିଁ ପ୍ରକୃତ, ଶାସ୍ତ୍ରୀୟର ଅନୁକରଣରେ ନୁହେଁ, ନିଜ ମନର ନିର୍ଦ୍ଦେଶରେ । ଜାଣୁ ମିନୀ, ଏ ହେମଚନ୍ଦ୍ର ଜଣେ ଇତିହାସ ଅଧ୍ୟାପକ । ତାଙ୍କ ସଙ୍ଗେ ତୁମେତ ଖୁବ ସୁବିଧାରେ ଇତିହାସ ଚର୍ଚ୍ଚା କରିପାରିବୁ ।

ମିନା ବେଣୀର ଗୋଟାଏ ଫଳକ ହାତରେ ଜଳାଉ ଜଳାଉ କହିଲା, ତମେ ଭୁଲ କହୁଛ, ମୁଁ ଇତିହାସକୁ ଘୃଣା କରେ, ଏ ବିଷୟରେ ତର୍କ କଲେ ତୁମେତ ଏକ ସମ୍ବାଦ ଖୁଲିଯିବ— ।

ସତି ଚାହିଁଲା ମିନାକୁ, ମିନା ଦେହରେ ଲାଗିଛି ଯୌବନ ପରଶ । କିନ୍ତୁ ଯୌବନର ସେ ସ୍ୱର୍ଗୀୟ ଧାରକୁ ମିନା ପରିଣତ କରି ଦେଇଚି ଅତି ଆଧୁନିକ ଫାଶନିଷ୍ଟ ଆଉ ପ୍ରଗଳ୍‌ଭତାର ସ୍ରୋତରେ । ଯୌବନର କମନୀୟ ଶ୍ରୀ ଅନ୍ତର୍ହିତ ବିଦେଶୀୟ କଳାଶିଳ୍ପରେ ନଷ୍ଟ ହୋଇ ଯାଉଚି । ମିନା ସତିର ହାତ ଧରିପକାଇ କହିଲା, ଆସନ୍ତୁ ନା ବଲ୍‌ପାର୍ଟି ଖେଳିବା—ଭାଇ ମୋ ସାଙ୍ଗରେ ଖେଳିଲେ ହାରିବେ ଜାଣନ୍ତି, ସେଥିପାଇଁ ଆଜିକାଲି ଡକାଇଲେ ମୋତେ ଖେଳିବାକୁ ଆସନ୍ତି ନାହିଁ । ମିନା ମୁଣ୍ଡ ଅଞ୍ଜ ଟେକାଇ ଦୃଷ୍ଟିରେ ଅନାଇଲା ସତିକୁ । ସତି ହେଉଚିବେଳେକୁ ପାଦରେ ଭୂଇଁରେ ଗାର କାଟୁଥିଲା ।

ସୁଧାଂଶୁ ବାବୁ କହୁଥିଲେ, ବୁଝିଲେ ସଚି ବାବୁ, ଏ ଜହ୍ନଟା ଫୁଲଟା ମତେ ଭାରି ଭଲ ଲାଗେ ଏହାର ସରଳତା ପାଇଁ ! ମୁଁ ତାଙ୍କ ହାତରେ ପ୍ରତିଦାନ ପାଣି ଦିଏ ।

ମିନା ସଚିର ହାତ ଧରି ଉଡ଼ି ନେଇ ନେଇ କହିଲା, ସଚି ବାବୁ ଅସନ୍ତୁନା କାଲିଅର୍ଥ ଖେଳିବା । ଭାରି ଲାଗିଥାନ୍ତୁ ତାଙ୍କ ଜହ୍ନଟା ଗଛରେ ! ଜହ୍ନଟା ତାଙ୍କୁ ସ୍ୱର୍ଗକୁ ନେବ ।

ସୁଧାଂଶୁ ବାବୁ ହସି ଉଠିଲେ ଜୋରରେ । ମିନା, କେତେ ମୁଁ ଅନେକ ଥର କହୁଚି ନା ତୁ ସିକ୍ସଟିନ୍‌ଥ ସେଞ୍ଚୁରୀରେ ! ସ୍ୱର୍ଗ ଏ ବିଂଶ ଶତାବ୍ଦୀରେ କଣ ଖୁବ୍ ବଡ଼ ଜିନିଷ ? ବିଂଶ ଶତାବ୍ଦୀ ପ୍ରମାଣ କରିଚି ତାର ବିଜ୍ଞାନ ସାହାଯ୍ୟରେ ସ୍ୱର୍ଗ ଦେବତାମାନଙ୍କର ନୁହେଁ, ସ୍ୱର୍ଗ ଏଇ ମର୍ତ୍ତ୍ୟର ମଣିଷମାନଙ୍କ ପାଇଁ । ସେମାନେ ଜାହା-ଜାହାଜ ସାହାଯ୍ୟରେ ସ୍ୱର୍ଗରେ ବିଚରଣ କରିବେ ଆଉ ସ୍ୱର୍ଗର ଦେବତାମାନଙ୍କ ସାମ୍ନାରେ ପ୍ରତ୍ୟେକ ଦିନ ନୂଆ ନୂଆ ତଥ୍ୟ ଆବିଷ୍କାର କରିବେ ! ସ୍ୱର୍ଗ ତ ବର୍ତ୍ତମାନ ମଣିଷମାନଙ୍କ ପାଇଁ କିଛି ନୂଆ ନୁହେଁ ! କଳ୍ପିତ ସ୍ୱର୍ଗର ସୌନ୍ଦର୍ଯ୍ୟଠାରୁ ମର୍ତ୍ତ୍ୟରେ ଅଦ୍ଭୁତ ଫୁଲ ଜହ୍ନର ରଙ୍ଗଧରଣର ସୌନ୍ଦର୍ଯ୍ୟ ଢେର ବେଶି, ମନୋହର ଏଇ ଜହ୍ନଟା···

ମିନା ବାଧା ଦେଇ କହିଲା, ସଚି ବାବୁ, ଆସନ୍ତୁ । ମିନା ଏକାଇ ଜୋରରେ ଭିଡ଼ିନେଲା ସଚିର ହାତକୁ । ସଚି ବାଧ୍ୟ ହୋଇ ମିନାର ଅନୁସରଣ କଲା । ମିନା ଯାଇ ଏହାଠିକ ଡାହାଣ ପଟକୁ ଥିବା ଗୋଟିଏ ଗଛେ ! ସେ ଗଛର ଗୋଟାଏ ଡାଳ ଉପରେ ସଚିକୁ ବସାଇ ଦେଇ ଆଉ ଗୋଟାଏ ଡାଳ ଉପରେ ନିଜେ ବସିଯାଇ କଲିଂବେଲଟାକୁ ଦୁଇ ଥର ବଜାଇଲା । ଗୋଟିଏ ଆଠ ଦଶ ବର୍ଷ ବୟସର ପିଲା ଆସି ସଲାମ କଲା । ମିନା ଚାହିଁଲା ...

କହିଲା, ଏତେଥର ଭଦ୍ରେ ଶିଖେଇଲି ସଲାମ କରିବା, କିନ୍ତୁ ଆଜିଯାଏ ଆସିଲାନି—ହେଉ, ହୋପ ଲେସ୍ ! ଯା ତୁ ଧ'କପ୍ ସୁଝାଁଙ୍କୁ କହି ନେଇ ଆସିବୁ ।

ପିଲାଟି ମୁଣ୍ଡ ହଲାଇ ମାର୍ଚ୍ଚରେ ଚାଲିଗଲା । ମୀନା କହିଲା, ମୁଁ ଏହାକୁ କେତେଦିନ ହେଲା ବୟ୍ ରୂପେ ଆପଏଣ୍ଟ କରିଛି ! ବର୍ତ୍ତମାନ ବିଲିଅର୍ଡ଼ ଖେଳ ଆରମ୍ଭ ହେଉ । ବିଲିଅର୍ଡ଼ ଟେବୁଲ ପାଖକୁ ମୀନା ଉଠି ଯାଇ କହିଲା, ଆସନ୍ତୁ !

ସଚି କହିଲା, କ୍ଷମା କରିବେ ମୀନା ଦେବୀ, ମତେ ବିଲିଅର୍ଡ଼ ଆସେନା !

ମୀନା ହସିଲା । କହିଲା, ଏ ବିଂଶ ଶତାବ୍ଦୀର ଯୁବକ ହୋଇ ଏତେ ସୁନ୍ଦର ଖେଳ ବିଲିଅର୍ଡ଼ ଶିଖିନାହାନ୍ତିନା ? ଭାଇଙ୍କୁ ଭଲ ଆସେନା । ଭାଉଜ'ଙ୍କ କଥା ତ ହୋପ୍‌ଲେସ୍ । ଏ ଶତାବ୍ଦୀରେ ପୁଣି ସେ ଲ୍ୟାଟେକର୍ ରହନ୍ତି । ଭାଇଙ୍କ ସଙ୍ଗେ ଟି ପାର୍ଟିରେ ଯୋଗ ଦେବାକୁ ମୁଁ ଯାଏ, ଆଉ ସାରଚନ୍ଦ୍ର ଦେବାକୁ ସଙ୍ଗେ ମିସେସ୍ ସୁଧାଂଶୁ ପଟ୍ଟନାୟକ ରୂପେ । କଣ କରିବ ? ଅନେକ ଜାଗାରେ ଅପମାନିତ ହୋଇଲଣି, ଏଥର ଆଉ ମିସେସ୍ ସଜିବାର ଇଚ୍ଛା ନାହିଁ ! କିନ୍ତୁ ସମସ୍ତ ଚୁପ୍ ରହି ଚାହିଁଲା ସଚି ଆଡ଼େ । ସଚି କାନ୍ଥରେ ଓଲ୍‌ଟରେ ଜେନରଙ୍କ ଛବିକୁ ଚାହିଁଛି ନିର୍ବାକ ହୋଇ । ମୀନା କହିଲା, ସଚିବାବୁ, ମୁଁ ତ କହୁବାରେ ଲାଗିଛି, ଆପଣ ଚୁପ୍ ରହିଛନ୍ତି ! ତା ହେଲେ ଏ ଟେବୁଲ, ଚେୟାର ଆଉ କାନ୍ଥ-ବାଡ଼ଠାରୁ ଆପଣ ଆଉ ଅଧିକା କଣ ? ସଚି ଜେନର୍ ଆଡ଼ୁ ମୀନା ଆଡ଼େ ମୁହଁ ଫେରାଇ ଚାହିଁଲା । ମୀନା ମୁହଁରେ କପଟ ଗୋଟାଏ ତୁଷ୍ଟ ହସ ଫୁଟି ଉଠିଛି । ସଚି ପୁଣି ଜେନର୍ ଆଡ଼େ ଚାହିଁ କହିଲା, କଣ ଆଉ କହିବାର ଅଛି ?

ଗୁଡ଼ଗୁଡ଼ଟା ଗୁ ଦେଇ ଗଲା । ସଙ୍ଗି ଗୋଟାଏ କପ୍ ଟ୍ରେରୁ ଉଠାଇ ନେଇ ପିଇବା ଆରମ୍ଭ କରିଦେଲା । ମିନା ସଙ୍ଗିର ହାତରୁ କପ୍ ଟା ଛଡ଼ାଇ ଆଣି ଚାହିଁ ଦେଇ ଗୋଲାଇ ଗୋଲାଇ କହିଲା, ଗ୍ଲୁ'ରେ ଚିନି ନ ଦେଇ ଖାଉଚନ୍ତି କିପରି ?

ଓଃ, ଅନ୍ୟମନସ୍କ ଥିଲି !

ଗ୍ଲୁ'କପଟା ସରି ଆସିଲା । ଖାଲି କପ୍ ଟା ଟ୍ରେରେ ଥୋଇଦେଲା ସଙ୍ଗି । ଟେବଲ ଉପରୁ ସିଗାରେଟ୍ କେସ୍ ଟାଏ ଆଉ ସିଗାରେଟ୍ ଲାଇଟର ବଢ଼ାଇ ଦେଲା ମିନା । ସଙ୍ଗି ସିଗାରେଟ ଖଣ୍ଡେ ଟାଣି ନେଇ ନିଆଁ ଲଗାଇଲା ।

ଆକାଶର ଫାଲେ ଏରବା ଫାଙ୍କରେ ଦେଖାଯାଉଛି । ସୂର୍ଯ୍ୟ ଅସ୍ତ ହୋଇ ଆସୁଛି । ସେପଟେ ଦେଖାଯାଉଥିବା ଦୁଇମହଲା କୋଠା ଉପରେ ଗୋଟାଏ ପିଲା କସରତ୍ କରୁଛି । ବସୁଛି, ଉଠୁଛି, ଉଠୁଛି ବସୁଛି···କସରତ, ଦେହରେ ବଳହେବ ! ତାଠାରୁ ଆଉ ଟିକିଏ ଦୂରରେ ଦୁଇଟା ଗୁଡ଼ି ଉଡ଼ୁଛି କାଳିଆ, ନାଲିଆ—କାଳିଆ ଗୁଡ଼ିଟା କଟିଗଲା, ପବନରେ ଭାସିଯାଉଛି— ।

ସନ୍ଧ୍ୟା ହୋଇ ଆସୁଛି । ଆକାଶରେ ଉଠିଚି ଦ୍ୱିତୀୟାର ବଙ୍କିମଚନ୍ଦ୍ର । ପ୍ରାସାଦର ଚୂଡ଼ାରେ ଦ୍ୱିତୀୟାର ବଙ୍କିମଚନ୍ଦ୍ର । ବର୍ତ୍ତମାନ ପ୍ରାସାଦ ହୁଏତ ପରିଣତ ହୋଇଛି ଅତୀତର ମହାଦେବରେ !

ଘର ଭିତରଟା ଅନ୍ଧାର ହୋଇ ଆସିଚି । ମିନା ଆସି ବସିଲା ସଙ୍ଗି ବସିଥିବା କୁସନ୍ ଚେଆର ବାହୁ ଉପରେ । ଆଜି ଆପଣ କାହିଁକି ବହୁତ ଅନ୍ୟମନସ୍କ ରହିଛନ୍ତି ! ଅଙ୍କ ବର୍ତ୍ତମାନ ବ୍ରେ-କାଇଟାଏ ଖେଲିଲେ ମନ୍ଦ କଣ ହୁଅନ୍ତା ?

ହରି ଚାହିଁଲା ଆଉ ଥରେ ଝରକା ଆଡ଼େ । ଝରକା ପାଖରେ ଟଙ୍ଗା ହୋଇଥିବା ମହାତ୍ମା ଗାନ୍ଧୀଙ୍କ ଛବିଟା ସନ୍ଧ୍ୟାର ମଳିନ ଆଲୋକରେ ଅସ୍ପଷ୍ଟ ହୋଇ ଆସିଛି । ଝରକାର ବାହାରକୁ ଦେଇ ଦୃଷ୍ଟି ଦେଲେ ଦୃଶ୍ୟରେ ପଡ଼େ ସହରର ରାଜପଥ । ରାଜପଥ ଉପରେ ଛୁଟିଛି ଜୀବନର ସ୍ରୋତ ପ୍ରତି ମୁହୂର୍ତ୍ତରେ । ଅସଂଖ୍ୟ କାର୍, ରିକ୍ସା, ମଣିଷ···ସମସ୍ତେ ଗତିବାନ୍, କିନ୍ତୁ ସେ ? ରାସ୍ତା ପାଖରେ ଥିବା ଇଲେକ୍ଟ୍ରିକ୍ ପୋଷ୍ଟରେ ଗୋଟାଏ ଲାଲ ବିଜ୍ଞାପନ ମରା ଯାଇଛି । ଏବେ ବି ତାକୁ ଲାଲ ଲେଖାଯାଇଛି ଭୟପ୍ରଦ ବୃଥା । ଇଲେକ୍ଟ୍ରିକ୍ ଲାଇନ୍‌ରେ ଛୁଟୁଥିବ କ୍ଷିପ୍ର ଗତିରେ ବୈଦ୍ୟୁତିକ ଶକ୍ତି । କିନ୍ତୁ ଇଲେକ୍ଟ୍ରିକ୍ ପୋଷ୍ଟ—ଯିଏ ବୈଦ୍ୟୁତିକ ଶକ୍ତିର କ୍ଷିପ୍ର ଗତି ପାଇଁ ସାହାଯ୍ୟ କରୁଛି, ସେ ସ୍ଥାଣୁ ଅଚଳ । ସେ ନିଜେ ବି ଠିକ ସେହି ଇଲେକ୍ଟ୍ରିକ୍ ପୋଷ୍ଟ ପରି ହୋଇ ଯାଇଛି ଅଚଳ, ସ୍ଥାଣୁ, ଗତିହୀନ !

ମିନା ହଠାତ୍ ହରି ଉପରେ ପଡ଼ିଗଲା । ତାର ଗୋଡ଼ ଖସି-ଗଲା ଭଳି ବୋଧହୁଏ । ହରି ଦୁଇ ହାତରେ ମିନାକୁ ଧରି ଠିଆ କରାଇଦେଲା । ବସ୍ତୁ ଆଣି ଥୋଇ ଦେଇଗଲା ଲଣ୍ଠନଟାଏ । କହିଲା, ନିକୁଞ୍ଜ ବାବୁ ଖୋଜୁଛନ୍ତି ।

ମିନା ଦୁଇହାତ ପାପୁଲିରେ ମୁହଁକୁ ଟିକିଏ ଘଷିଦେଇ କହିଲା, ଆପଣ ହରି ବାବୁ, ଯାଆନ୍ତୁ । କାଲି ଦେପର ସକାଳୁ ଆସନ୍ତୁ । ଏଠି ଚା ଖିଆଟା ହେବ, ଆଉ ବିଦାୟ—ଗୁଡ୍ ନାଇଟ୍, ଚାଲିଗଲି ବୋଲି କିଛି ମନେ କରିବେନି—। ହରି ଉଠି ଚାଲି ଆସୁଥିଲା । ମିନା ପଛରୁ ଫେରି କହିଲା, ଚାଲନ୍ତୁ ଗେଟ୍ ପାଖରେ ଛାଡ଼ି ଦେଇ ଆସିବି । ଗେଟ୍ ପାଖରେ ମିନା ଗୋଟିଏ ଫୁଲ ହରି ହାତରେ ଦେଲା । ହରି କିଛି ପଚାରିବା ପୂର୍ବରୁ ମିନା କହିଲା, ଯା ନାଁ

ହେଉଛି ଫରଗେଟ୍-ମି-ନଟ୍ ଫ୍ଲାଓ୍ୱାର—ଗୁଡ୍ ନାଇଟ୍ । ଶୁଭ ସ୍ୱପ୍ନଦେଖ

ମିଶ୍ରାଙ୍କ ଘର ଚାକର ସଙ୍ଗେ ହାଟରେ ଦେଖା ହେଲା । କହିଲା, ବାବୁ ! ଘର ସବୁ ଖୋଜୁଥିଲେ ? ତେଲେଙ୍ଗାବଜାର ପୋଷ୍ଟ ଅଫିସ ପାଖରେ ଗୋଟିଏ ଘର ଖାଲି ଅଛି । ସେଠିକି ଯାଇ ବୁଝନ୍ତୁ ।

ସରୋଜ ବାହାରୁ ଆସୁ ପ୍ରତିମା ତାକୁ କୋଳରେ ଆଣି ବସିଲା । ସେ ପଚାରିଲା, କାହିଁକି କାନ୍ଦୁଛ ? ପ୍ରତିମା କହିଲା, କୁଆଡ଼େ ମା'ଙ୍କୁ ବିସ୍କୁଟ ଟାଏ ମାଗିଲା, ମା' ଖାଉଥିଲେ । ସେ ନଦେବାରୁ କୁଆଡ଼େ ତାଙ୍କ ଗରୁ ନେଇ ଆସିଲା । ମା' ରାଗିଗଲେ । ଆଉ ତା ଫଳରେ ମାଡ଼ ହେଲା—ପ୍ରତିମା କାନ୍ଦବାକୁ ଆରମ୍ଭ କଲା ।

ସହ ! ଘର ବୁଝିଲ, କାଲି ସକାଳୁ ବୁଲି ଯିବା—ଆଜି ଏଠି ନୁହେଁ ।



ରାତି ଗୋଟାଏ । ସରୋଜ ଓ ପ୍ରତିମା ଶୋଇ ପଡ଼ିଲେଣି କେତେବେଳୁ । ସେଦିନ ଟ୍ରେନରୁ ଆଣିଥିବା ଗରମ କୋଟଟା ସେ ଜାଣିକି ପିନ୍ଧିଛି । ସରୋଜ ଆଉ ପ୍ରତିମା ଘୋଡ଼ି ହୋଇଛନ୍ତି ଲମ୍ବା କମଳ ଗୋଟିଏ । ଭଙ୍ଗା ଝରକାରେ ଧପ ହୋଇଥିଲା ପଖା ଖଣ୍ଡେ । ଅଧାଟି ଲୁଣ୍ଡି ଗଲାଣି । ତେଣୁ ତାର ଫାଙ୍କ ଦେଇ ପବନ ଆସୁଛି ।

ମଣ୍ଟୁବାବୁଙ୍କ ସ୍ତ୍ରୀ ସୁମିତ୍ରା ସରୋଜକୁ ମାରିଲେ ଗୋଟାଏ ବିସ୍କୁଟ ପାଇଁ । ଆଉ କୁଆଡ଼େ କହିଲେ ଲୋଭଣୀ ଟୋକି, ମାଡ଼-

ଶିଖର ଝିଅ ବୋଲି । ମଣ୍ଟୁବାବୁ ସେତେବେଳେ ନିଜ ଷ୍ଟଡି ରୁମରେ ବସିଥିଲେ । ସେ ପାଟି ଫିଟାଇ ନାହାନ୍ତି । ସ୍ତ୍ରୀ ସୁମିତ୍ରାଙ୍କ ଉତ୍ତରରେ ହୁଏତ । ଅଧ୍ୟାପକ ସଚ୍ଚି ବୋଷର ଝିଅକୁ କିଏ କହୁପାରେ ବ୍ରେଭରଣୀ ବୋଲି ? ମଟି ଶିଖିଅର ଝିଅ ବୋଲି ? ଅଧ୍ୟାପକ ସଚ୍ଚି ବୋଷ କ'ଣ ମଗିଶିଅ ? ନା, ନିଶ୍ଚୟ ଏହାର ପ୍ରତିଶୋଧ ନେବାକୁ ପଡ଼ିବ । ସନ୍ଧ୍ୟାବେଳେ ମନେ ହେଉଥିଲା ସଙ୍ଗେ ସଙ୍ଗେ ଉପରକୁ ଯାଇ ସୁମିତ୍ରାକୁ ଆଉ ମଣ୍ଟୁକୁ ଭିଡ଼ଆଣି ବେକ ଚିପି ଦେବାକୁ । ହାତ ପାପୁଲି ସେ ହିଂସ୍ର କାର୍ଯ୍ୟ ପାଇଁ ଫୁଲି ଫୁଲି ଉଠୁଥିଲା । କିନ୍ତୁ ବର୍ତ୍ତମାନ ? ହାତ ତଳେ ସେତେବେଳେ ଯେଉଁ ଉଷ୍ମ ରକ୍ତର କ୍ଷିପ୍ର ସ୍ରୋତ ବହୁଥିଲା ତାହା ଶୀତଳ ହୋଇ ଯାଇଛି ! ଅଧ୍ୟାପକ ପ୍ରଫୁଲ୍ଲ ପଟ୍ଟନାୟକର ଅଶ୍ରୟପ୍ରାର୍ଥୀ, କାଙ୍ଗାଳ ସଚ୍ଚି ବୋଷ କ'ଣ କରିପାରେ ? ବରଂ ସେ ଯଦି ଏତିକି ସାହାଯ୍ୟ ଦେଇ ନଥାନ୍ତେ ତେବେ ହୁଏତ ଦ୍ୟା ମଧ୍ୟରେ ସ୍ୱର୍ଗପୁର କିମ୍ବା ପ୍ରେତପୁର ଦେଖିବାକୁ ପଡ଼ିଥାଆନ୍ତା !

ପ୍ରତିଶୋଧ ? ଛବି ଅପା କି ପ୍ରତିଶୋଧ ନେଲା ? ଛବି ଅପା ଜୀବନରେ ପନ୍ଥ ନେଇଛି । ଆଉ ଏଇ ପନ୍ଥନେବା ଭିତରେ ହୁଏତ ତା'ପ୍ରତି ହୋଇଥିବା ଅତ୍ୟାଚାରର ପ୍ରତିଶୋଧ ନେଇ ସାରିଛି ।

ପାଞ୍ଚ ବର୍ଷର ସନ୍ତୋଷକୁ ମାରିପାରେ ସୁମିତ୍ରା ?

ସନ୍ତୋଷ ? ସନ୍ତୋଷ କିଏ ? ପ୍ରତି ମୁହୂର୍ତ୍ତରେ ପୃଥିବୀର ପ୍ରତି-କୋଣ ପୁରି ଉଠୁଛି କେତେ ସନ୍ତୋଷରେ । ଯଦି ଗୋଟିଏ ସନ୍ତୋଷ ମରେ, ତେବେ ଦୁନିଆର କିଛି କ୍ଷତି ହେବନି । ତା ସ୍ଥାନରେ ସେତେବେଳକୁ କୋଟି କୋଟି ସନ୍ତୋଷ ଜନ୍ମ ହୋଇ ସାରିଥିବେ । ଦୁନିଆର ସେ ଛୋଟି ଛୋଟି ପିଲଙ୍କ ଭିତରେ କଣ ସନ୍ତୋଷର ଆତ୍ମା ରହିବ ନାହିଁ ? ନିଶ୍ଚୟ ରହିବ ।

ଘର ଭିତରେ ଅନ୍ଧାର !

ଅନ୍ଧାର ଭିତରୁ ଚାଲି ଆସିଲା ଯେପରି ମିନା । ମିନା ହାତରେ ଗୋଟିଏ ଫୁଲ । ତା ହାତରେ ଧରାଇ ଦେଇ କହିଲା, ଏ ଫୁଲର ନାଁ କ'ଣ ଜାଣନ୍ତି ? ଫର୍‌ଗେଟ୍‌ ମି ନଟ୍‌—ମତେ ଭୁଲି ଯାଅନା— ମିନା ଓଠରେ ଦୁଷ୍ଟ ଚପଳ ହସ !

ସରି ବୋଷ, ଅଣ୍ଡ୍ରପ୍ରାର୍ଥୀ, ଗରିବ, କାଙ୍ଗାଳ ସରିବୋଷ, ଆଉ ଧନୀ, ମାନୀ, ପ୍ରତିପତ୍ତିଶାଳୀ ସୁଧାଂଶୁ ପଟ୍ଟନାୟକଙ୍କର ଭଉଣୀ ଅତି ଆଧୁନିକା, ଉଚ୍ଚ ଶିକ୍ଷିତା ଶ୍ରୀ ସଙ୍ଘମିତ୍ରା ପଟ୍ଟନାୟକ— । ଛୋଟ ଶିଶୁ ରବରର ଖେଳନାଟା ଧରି କହେ, ତୁ ମୋ ପୁଅ । ଅନ୍ଧ ରବର ଖେଳନାର ଯଦି ଜୀବନ ଥାଆନ୍ତା, ସେ ହୁଏତ ଭାବନ୍ତା ଆଉ ମନେ ମନେ କହନ୍ତା, ହିଁ ମୁଁ ପୁଅ ତମର, ତମର । ଦୁଇଦିନ ପରେ [illegible]ଲ ପୁରୁଣା ଭଙ୍ଗା ହୋଇଯାଏ ସେତେବେଳେ ସେ ଖେଳନାଟା ଶିଶୁର ହୋଇଯାଏ ଅଦରକାରୀ । ସେ ତାକୁ ଫିଙ୍ଗି ଦେଇ ନୂଆଟାଏ ଆଣେ ଆଉ ନୂଆକୁ ଠିକ ପୂର୍ବ ସ୍ୱରରେ କହେ, ତୁ ମୋ ପୁଅ !

ଚାରିଆଡ଼ ନିଃଶବ୍ଦ ।

ଆଖି ପତାରେ ନିଦ ଲାଗି ଆସୁଛି । ଠିକ୍ ନିଦ ହେଉନାହିଁ କାହିଁ । ସରି ବୋଷ, ମିନା, ସୁମିତ୍ରା···ପ୍ରତିମା, ସଙ୍ଘ··· ନୃପେନ୍ଦ୍ର···ତ୍ରିଲୋକଙ୍କୁ ସଙ୍ଗ, ନାମାବଳୀ କଣ କି ? ଦିନବେଳା ସୂତା—ସୂତା ତରଙ୍ଗରେ, ଖାଦି ସୂତ ପାଣି ପାଇଁ ଗୁଡ଼ା ଅସୁଲ । ସତ୍ୟ—ସେବା ଅହିଂସା—ଅହିଂସା ଆଉ ସ୍ୱତରେ ତଳାଏତ— ବୁଦ୍ଧିମତୀ, ଶିକ୍ଷିତା, ଧନୀ ସୁମିତ୍ରା; ମାରିଲା ଗୋଟାଏ ଅଣ୍ଡ୍ରପ୍ରାନ, କାଙ୍ଗାଳ, ଅଶିକ୍ଷିତ ପାଞ୍ଚ ବର୍ଷର ଛୁଆକୁ ?

ସଜି ଗୁଲିଗ ଭୁଷତେ ?

## —ଛଅ—

ସରୋଜକୁ ଜର ହେବାର ଆଜକୁ ଛଅ ଦିନ ହେଲା । ସରୋଜ ଆଉ କଥା କହି ପାରୁ ନାହିଁ, ଖାଲି ଭୁଲୁ ଭୁଲୁ କରି ଗୁହୁଁଚି । ଏ ଜର ଦେହରେ ତାକୁ ଭାତ ଖାଇବାକୁ ପଡ଼ୁଚି । ଦୁଧ କେଉଁଠୁ ପାଇବ ? ମଣ୍ଟୁ ବାବୁଙ୍କୁ ଏତେ କହି କହି ଦୁଧ ଟୋପାଏ ବି ଦେଲେ ନାହିଁ—ଔଷଧ ତ ଦୂରର କଥା । ସରୋଜ ଭଲ ହେବ କିପରି ? ଯନ୍ତ୍ରଣାରେ ତା ଦେହ ମିଶି ଯାଉଚି । କର ଲେଉଟାଇବାକୁ ବି ତା ଦେହରେ ବଳ ନାହିଁ । ଆଉ କେତେ ଦିନ ପରେ ହୁଏତ ସରୋଜ ଏ ସୁନ୍ଦର ପୃଥିବୀ ଛାଡ଼ି ଚାଲିଯିବ । ଛି, ଛି, କଣ ଭାବୁଚି ସେ ? ସରୋଜ ମରିଯିବ ? ନା ନା, ସରୋଜ ମରି ନ ପାରେ, ସରୋଜର ମୃତ୍ୟୁ ନାହିଁ ।

ମୁଣ୍ଡ ପାଖକୁ ବସିଚି ପରି । ଦୁଇ ଆଖି ଲୁହରେ ଛଳ ଛଳ । ହୃଦୟରେ ଅସୀମ ବେଦନା ! ମା, ନିଜର ରକ୍ତ ଦେଇଚି । ତିନି ଦିନ ହେଲା ସେ ବି ଖାଇ ନାହିଁ ।

ସରି କହିଲା, ପରି କେତେ ଦିନ ଆଉ ଏପରି ଉପାସ ଶୋଇବ ?

ପରି କେମିତି ଅନ୍ୟମନସ୍କ ଭାବରେ କହିଲା, କେତେ ଦିନ !

ପରି ଯାଅ ଖାଇ ନିଅ, ଖାଇଲେ ସିନା ସରଜୁର ସେବା କରିବ, ନ ଖାଇଲେ ଦିନ ରାତି ବସି ଏମିତି କାନ୍ଦିଲେ, ତାର ସେବା କରିବ କେମିତି ? ଯାଅ, ସୁନାଟି ପରି ।

ପ୍ରତିମା ଖୁବ୍ ଜୋରରେ କାନ୍ଦି ଉଠିଲା ।

ସରି କହିଲା, ପରି, ଛି, ତମେ ଏମିତି ବାୟାଣୀଙ୍କ ଭଳି ହେଲେ ଚଳିବ ?

ପ୍ରତିମା ତଥାପି କାନ୍ଦିବାରେ ଲାଗିଥାଏ । ସର୍ଜି ତା ପାଖକୁ
ଛୁଟି ଯାଇ ଲୁଗାରେ ଲୁହ ପୋଛି ଦେଲା । କହିଲା, ଅଜାଡ଼ୁ ତ
ତମେ ଏମିତ ହେଲଣି ! ଅପ୍ତୁର ଦୁଃଖ ଅସୁଚା, ଅପ୍ତୁର କଷ୍ଟ
ଅସୁଚା, ଅପ୍ତୁର ଯନ୍ତ୍ରଣା ଅସୁଚା । ତାକୁ ପୁଣି ସହିବ କିପରି ? ତମେ
ମା, ତଥାପି ତମେ ଯେ ଅଶ୍ୱପୁତ୍ରାର୍ଥୀ ଏ କଥା ଭୁଲି ଯାଉଚ ଯେ !
ହୃଦୟକୁ ପଥର କର, ହୃଦୟକୁ ପାଷାଣ କର ଦେଉଳର ଦେବତା
ପରି, ତା ହେଲେ ଯାଇ ଦୁଃଖ ସହି ପାରିବ, ଯନ୍ତ୍ରଣା ସହି ପାରିବ ।
ଯେଉଁ ଅଶୁଭ ମୁହୂର୍ତ୍ତରେ ଆମର ଜନ୍ମ ହୋଇ ଥିଲା ସେଇଠୁଁ,
ଦିନେ ହସିବା ଆମ ଭାଗ୍ୟରେ ଜୁଟିଲା ନାହିଁ । ଲୁହରେ ଆମ ଜୀବନ
ଲେଖା ହୋଇଚି ଯେପରି !

ସର୍ଜି ଯାଇ ଝରକା ପାଖରେ ଠିଆ ହେଲା । ରାସ୍ତା ଉପରେ
ଅସଂଖ୍ୟ ଯାନବାହାନ ଛୁଟିଚି । ଏଇ ମଟର ମାଡ଼ିଗଲା ଗୋଟାଏ
କୁକୁର ଉପରେ । ମୁହୂର୍ତ୍ତକ ପାଇଁ କରୁଣ ଚିତ୍କାର କରି ଉଠିଲା ।
ତାପରେ ମଟର ଚାଲି ଯାଇଛି । କୁକୁର ଶେଷ ହୋଇ ଯାଇଚି ।
ତାର ତପ୍ତ ରକ୍ତ ସ୍ରୋତରେ ରାସ୍ତାର ଏକାଂଶ ଲାଲ ହୋଇ ଉଠିଲା ।
ଏହା ଭିତରେ ଅନେକ କାର ଚାଲି ଗଲାଣି । ରାସ୍ତା ଧାରରେ ଲୋକେ
ଚାଲିଛନ୍ତି । କାହାରି ତା ପ୍ରତି ଭ୍ରୂକ୍ଷେପ ନାହିଁ ।

ପ୍ରତିମା ଭାତ ଦାନା ହେଲେ ଖାଇ ନାହିଁ । ଦିନ ସାତ ସରୁ-
ବେଳେ କାନ୍ଦୁଚି । କିନ୍ତୁ କେଉଁ ? ସରଳୁ କିଏ ତା ଝିଅ ନୁହେଁ, ସେ
କିଏ ରକ୍ତ ଦେଇ ନାହିଁ ? ଦିନେ ସୁଦ୍ଧା ତା ଦୁଃଖରେ ସେ ଉପାସ
ରହି ନାହିଁ ; ମୁହୂର୍ତ୍ତେ ସୁଦ୍ଧା ତ ତା ପାଇଁ କାନ୍ଦି ନାହିଁ । ସେ ବାପ,
ପର ପ୍ରତିମା ମା !

ଜନନୀ ତୁମେ ନାରୀ କି ମହୀୟସୀ ! କିନ୍ତୁ ଛଳନାମୟୀ ନାରୀ ତୁମେ, କି ବୀଭତ୍ସ ! ସଈ ମନେ ମନେ ଭାବୁଥିବାର ସେଇ ଜନନୀକୁ ନମସ୍କାର କଲା ।

ପଲ୍ଲି ଦୂରର ସେ ପ୍ରାନ୍ତରରେ ସବୁଜ ଘାସର ଆସ୍ତରଣ । ଦେବଦେଷ୍ଟା ଗଛରୁ ପତ୍ର ଝଡ଼ିବାକୁ ଆରମ୍ଭ କଲାଣି । ଏତେ ସୁନ୍ଦର ପ୍ରକୃତି ମଧ୍ୟରେ କାହିଁ ସେ ଜୀବନ ? ଏ ଘାସର, ଏ ଗଛର ସୌନ୍ଦର୍ଯ୍ୟ ଥାଇପାରେ; କିନ୍ତୁ ଜୀବନ ନାହିଁ । ପ୍ରାଚୁର୍ଯ୍ୟ ଅଛି, କିନ୍ତୁ ପ୍ରାଣ ନାହିଁ । ଚତୁର୍ଦ୍ଦିଗରେ କିପରି ଗୋଟାଏ ଶାନ୍ତ ଉଦାସ ଭାବ ଖେଳି ଯାଉଛି ଯେପରି । ମୌନାବସ୍ଥ ପ୍ରକୃତିର ଅଙ୍ଗନରେ ନାହିଁ ସେଇ ଜୀବନ ଯାହା ମନୁଷ୍ୟକୁ ଅନ୍ତତଃ ବଞ୍ଚିବା ପାଇଁ ଉତ୍ସାହ ଦେବ । କେଉଁ ଅଶରୀରୀ ପ୍ରକୃତିରୁ ନେଇ ଯାଇଛି ସେ ଐଶ୍ୱର୍ଯ୍ୟ, ସେ ପ୍ରାଣ ପ୍ରାଚୁର୍ଯ୍ୟ !

ସଈ ! ସଈ !

ସଈ ଫେରିବା ଆଡ଼କୁ ମୁହଁ ଫେରାଇଲା । ଦୁଆର ମୁହଁରେ ଠିଆ ହୋଇଛନ୍ତି ମଣ୍ଟୁ 'ବାବୁ । ଦୁଆର ପାଖକୁ ଆସି କହିଲା, କାହିଁକି ଡାକୁଛନ୍ତି ?

ଆଜି କଣ ମୁଁ କଲେଜ ଯିବିନି ?

ମୁଁ ତ ନାହିଁ କରୁନାହିଁ କଲେଜ ଯିବାକୁ ?

ନାହିଁ କରୁନା ଯେ, କେମିତି ଯିବି ? ଚୁଲିତ ଲାଗି ନାହିଁ ଏତେବେଳ ଯାଏ !

ଓଃ, ସରି, ଯାଅତ ସେପେଇ କରିବ, ନା, ନା ସେ କପରି ଯିବ ? ତୁଅଟା ଭିତରେ —

ଜର ଆଉ କାହାକୁ ହୋଇଛି କି ? ଦୁଇଦିନ ହେଲା ସେଫେଇ ନାହିଁ । କାଲି ସଞ୍ଜରେ ମୁଁ ନିଜେ ସେଫେଇ କରିଥିଲି, ସୁମିଙ୍କ ସର୍ଦ୍ଦି ଧରିଛି । କାଲି ପରିବା କାଟୁ କାଟୁ ଅଙ୍ଗୁଳି କାଟି ହୋଇଗଲା । କେତେ ଦିନ ଆଉ ଏପରି ଖାଇବି ?

ସଜି ହରି ପାଖକୁ ଯାଇ କହିଲା, ହରି ଯାଆନ୍ତ ସେଫେଇ କରିବ—

ହରି ଉଠିଗଲା ସେଫେଇ ଘରକୁ ।

ଆଖି ବନ୍ଦ କରି ସରଜୁ ଶୋଇଛି । ସଜି କେତେ ସମୟ ସରଜୁର ମୁହଁକୁ ଚାହିଁଲା । ତା ପରେ ବାହାରକୁ ଆସିଲା । ସୁମିତ୍ରା ଉପରୁ ପାଟି କରୁଛନ୍ତି, ଏ ଡ୍ରାଇଭର, ଶୀଘ୍ର କାର ବାହାରକର, ଡକ୍ଟରବାବୁ ବାହାରକୁ ଯିବେ, ବାହାର କର୍ !

ମଟର ଗ୍ୟାରେଜରୁ ଡ୍ରାଇଭର ବାହାର କଲା କାର୍ । ସୁମିତ୍ରା ଓହ୍ଲାଇ ଆସିଲେ । ଦେହରେ ଜର୍ଜେଟ ଶାଢ଼ୀ, କାନରେ ପ୍ଲାଷ୍ଟିକ ଇୟାରିଂ, ଗୋଡ଼ରେ ହାଇହିଲ ସୁ, ଆଖିରେ ଅପୂର୍ବ କଟାକ୍ଷ । ସୁମିତ୍ରା ଯାଇ ଆଗସିଟରେ ଡ୍ରାଇଭର ପାଖରେ ବସିଲେ । ଇଭ୍ନିଂ ଇନ୍ ପ୍ୟାରିସର ମନୋହର ଗନ୍ଧ ଭାସି ଆସୁଛି । ବେଶର ଐଶ୍ୱର୍ଯ୍ୟ ଆଖି ଝଲସାଇ ଦେଉଛି । କାର୍ କ୍ଷିପ୍ରଗତିରେ ଫାଟକ ପାର ହୋଇଗଲା । ଇଭ୍ନିଂ-ଇନ୍-ପ୍ୟାରିସର ଗନ୍ଧ ତଥାପି ପବନରେ ମିଶି ରହିଛି ।

ପନର ଷୋଳ ବର୍ଷର ଝିଅ । ଦୈନ୍ୟକୁ ଉପହାସ କରି ତା'ର ଦେହରେ ଫୁଟି ଉଠିଛି ଯୌବନ । ଶତଚ୍ଛିନ୍ନ ଶାଢ଼ୀ । ମୁଣ୍ଡରେ ଅନେକ ଦିନ ଧରି ତେଲ ଲଗାଯାଇ ନାହିଁ । ଦେହସାରା ମଇଳା । କେମିତି ଗୋଟାଏ ଗନ୍ଧ ବାହାରୁଛି । ତଥାପି ଦୈନ୍ୟର ସେ ଆବରଣ ତଳୁ ଫୁଟି ଉଠୁଛି ଯେପରି ସ୍ୱର୍ଗୀୟ ସୁଷମା !

ଗୀତ ବୋଲି ସାରି ବାଳକଟି ହାତ ପତାଇ ମାଗିଲା, ବାବୁ !

କଣ ଟେ ଦିଅ !

ବାବୁ, ଦୁଇଦିନ ହେଲା ଖାଇନାହିଁ —

ମୋ ପାଖରେ କିଛି ନାହିଁ ଟେ ଦିଅ—ମୁଁ ···

ଦୟାକର ବାବୁ, ଭାରି ଭୋକ –

ସରି ଘର ଭିତରକୁ ଗଲା । ଦୁଇ ପଇସା ସରଳୁ ମୁଣ୍ଡ ତଳେ ଅଛି । ପ୍ରତିମା ରଖିଛି ସରଳୁ ପାଇଁ ବିସ୍କୁଟ କିଣିବ ବୋଲି । ସରଳୁର ଦେହରେ ମୃତ୍ୟୁର କଳା ଘୋର ଛାୟା ଖେଳି ଯାଉଛି ଯେପରି । ନା, ନା, ଫେରିଯାଉ ସେ ବାଳକ । ସରି ଦୁଆର ମୁହଁ ପାଖକୁ ଆସିଲା । ବାଳକଟି ଗୀତ ବୋଲିବାରେ ଲାଗିଛି—ଦୀନବନ୍ଧୁ ହେ, କବେ ଦୟା ନାହିଁକି, ଦୀନବନ୍ଧୁ ହେ···ସରିକୁ ଦେଖି ଗୀତ ବନ୍ଦ କରି ବାଳକଟି କହିଲା, ବାବୁ ଦଅ, ଭିକାରୀ ଲୋକ କେତେ ଆଡ଼କୁ ଯିବାକୁ ହେବ । ସରି କହୁଥିଲା, ନାହିଁ, କିନ୍ତୁ କିଏ ଯେପରି ତାର ତଣ୍ଟି ଚିପି ଧରିଲା । ନାହିଁ ? ମିଥ୍ୟାବାଦୀ ! ସରଳୁ, ସରଳୁ ପାଇଁ ବିସ୍କୁଟ କିଣାଯିବ ? ଦୁଇପଇସା କାହାର ବେଶୀ ଦରକାର ? ସେ ଭିକାରି, ନା ସରଳୁର ? ସରି ସରଳୁର ବିଛଣା ପାଖକୁ ଫେରିଗଲା । ସରଳୁର ମୁଣ୍ଡ ତଳୁ ଦୁଇପଇସା କାଢ଼ି ନେଲା । ସରଳୁ ଆଖି ମେଲିଇଲା । କି କରୁଣ, କି ମର୍ମନ୍ତୁଦ ସେ ଚାହାଁଣୀ ! ଦେହ, ମନ ପ୍ରାଣ ସବୁକୁ ଆଘାତ କରୁଛି ଯେପରି ! ସରଳୁ ଧୀରେ ଧୀରେ ଡାକିଲା, ବାପା ! ତାପରେ ଆଖି ପୁଣି ବନ୍ଦ କରି ଦେଲା । ନା, ଏ ଦୁଇପଇସା ସରଳୁର ବେଶୀ ଦରକାର । ବାଳକଟି ଡାକ ପକାଇଲା, ବାବୁ ଦୟାକର ଶୀଘ୍ର !

ସଇଁ ବାଲଭାଟି ହାତରେ ଦୁଇପଇସା ଦେଲା ।

ଭାରି ସୁନ୍ଦର ଗାଉଛନ୍ତି ଝିଅଟି ! ତୋ ନାଁ କଣ ଲୋ ଝିଅ ?

ଅପ୍ସରା—

ମଣ୍ଟୁବାବୁ ଅସିଛନ୍ତି ।

ମଣ୍ଟୁବାବୁ କହୁଲେ, ଅପ୍ସରା ! ସୁନ୍ଦର ନାଁଟିଏ ତ !

ଅପ୍ସରା ତଳକୁ ମୁହଁପୋତ ଠିଆହେଲା ।

ଆ ଉପରକୁ ଗୀତ ବୋଲବୁ—

ଅପ୍ସରା କହିଲା, ନାହିଁ ବାବୁ ଦୁଃଖୀ ଲୋକ, ଦ୍ୱାରଅଡ଼କୁ ଯିବ—

ଚାଲ, ଟଙ୍କା ଦେବ ।

ଆସନ୍ତୁନା ସଇଁବାବୁ ଗୀତ ଶୁଣିବା । ଭଲ ସୁନ୍ଦର କଣ୍ଠ ଅଛି । ଗୀତ ଶୁଣିବାରେ ମୋର ଭାରି ଆଗ୍ରହ ।

ସଇଁ କେମିତି ଅନ୍ୟମନସ୍କ ଭାବରେ କହିଲା, ନା···

ମଣ୍ଟୁବାବୁ ଚାଲିଲେ ଆଗରେ, ତାଙ୍କ ପଛେ ପଛେ ଅପ୍ସରା ।

ଅକାଶରେ ଖଣ୍ଡ ଖଣ୍ଡ ମେଘ ଭାସି ଯାଉଛି । ହୁଏତ ଅଜି ବର୍ଷା ହୋଇପାରେ । ଅଣ୍ଡାପବନ ବହୁଛି । ଦେହ ଥରି ଉଠୁଛି ଶୀତରେ । ତଥାପି ଅଜ ଟିକଏ ଶୀତ କମ୍ ଅଛି । ଅକାଶର ମେଘମାଳା କୁଆଡ଼େ ଚାଲିଛନ୍ତି ? ଜୀବନ ପଥରେ, ନା ମୃତ୍ୟୁ ପଥରେ ? ଜୀବନ ମୃତ୍ୟୁ, ମୃତ୍ୟୁ ଅଉ ଜୀବନ । ଜୀବନ ପରେ ମୃତ୍ୟୁ ଆସେ, ଅଉ ମୃତ୍ୟୁ ପରେ ଅସେ ଜୀବନ ! କି ବିଚିତ୍ର ଏଇ ଜୀବନ ଅଉ ମୃତ୍ୟୁ !

ପ୍ରଭମା ଦଉଡ଼ି ଆସି କହିଲା, ଦେଖିଲଣି !

କଣ ?

ଏଇ ମଣ୍ଟୁବାବୁ—

କଣ ହେଲା ?

ଛିଃ, ଛିଃ, ଏତେ ଖରାପ···କୁଅଭ୍ୟାସ ଗୋଟାଏ ମାଗିଖାଇଲୁ ଆଣି—

ତମର କଣ ଅଛି ? ଯାଅ ତମ କାମ କର—

ସରଳୁ !

ମୁଁ ଅଛି ।

ପ୍ରତିମା ଚାଲିଗଲା । ତାର କିଛି ସମୟ ପରେ ଆସିଲା ସେଇ ଉଦ୍ଧାରକର୍ତ୍ତ୍ରୀ ଝିଅଟି । ଅପ୍‌ସରା ଗୋଟାଏ ନୂଆଗୁନ୍ଦର ଗୋଡ଼ ହୋଇଛି । ମୁହଁ ତଳକୁ ପୋତି ପୋତି ଆସୁଥାଏ ।

ସିଏ ଡାକିଲା, ଏ ଝିଅ ଶୁଣିତ !

ଅପ୍‌ସରା ପାଖକୁ ଆସି କହିଲା, କ'ଣ ?

କେତେ ପାଇଲୁ ?

ଦ' ଟଙ୍କା !

ଅପ୍‌ସରା ତଳକୁ ମୁହଁ ପୋତି ଠିଆ ହୋଇଥାଏ । ସିଧା ଭାବରେ ଚାହିଁବାକୁ ହୁଏତ ତାର ସାହସ ନାହିଁ । ଅପ୍‌ସରା ନିଜର ଅବସ୍ଥାର କହିବାକୁ ଚେଷ୍ଟା କରୁଥିଲା ବୋଧହୁଏ ।

କିଛି ସମୟରେ ଅପ୍‌ସରା ଚାଲିଗଲା । ମଣିଷର ଅପ୍‌ସରା ! ମଣିଷର ଏଇ ଅପ୍‌ସରା ଚୂଡ଼ାନ୍ତ କି ସୁଲଭ !

ଏ ବିସ୍କୁଟବାଲା ହେଇଯାଉଛି—ହେ ବିସ୍କୁଟ—

ବିସ୍କୁଟବାଲା ଆସି ପହଞ୍ଚିଲା, କେତେକର ଦେବି ?

ଦେ ଦଶ ପଇସାର ।

ଗୋଟାଏ ବିସ୍କୁଟ ବଢ଼ାଇ ଦେଲା ହାତକୁ । କିଛି ସମୟ ପରେ ପ୍ରତିମା ଫେରିଆସି କହିଲା, ତକିଆ ତଳେ ଦୋପଇସିଟିଏ ରଖିଥିଲି କଣ ହେଲା ?

ମୁଁ ଖର୍ଚ୍ଚ କରିଛି ।

ଆଗରୁ କହିଲି ନାହିଁ, ବିସ୍କୁଟ କିଣିଲି ଯେ—

ସତି ପ୍ରତିମା ହାତରୁ ବିସ୍କୁଟଟା ଛଡ଼େଇ ନେଇ ବିସ୍କୁଟବାଲାକୁ ଦେଇ କହିଲା, ଯାଅ ।

ଛୁଆଟା ପାଇଁ ବିସ୍କୁଟ କିଣିବ ବୋଲି ଦିଟା ପଇସା ରଖିଥିଲି— ଖର୍ଚ୍ଚ କରିଦେଲ ? ବାପ ହୋଇ କୋଉଦିନ ଗୋଟାଏ ପଇସା ଦେଇଛ ଭଲା ?

ସତ !

ପଇସାଟିଏବି ରୋଜଗାର କରିବାର ସାଧ୍ୟ ନାହିଁ ; ସେଥିରେ ପୁଣି ଖର୍ଚ୍ଚ ଚାଲିଛି !

ସତ !

ମଣ୍ଟୁବାବୁଙ୍କୁ ଦେଖି ସତି ଭିତରକୁ ପଶିଗଲା ।

ଏପରି ଖାଇବାଠାରୁ ଉପାସ ରହିବା ଭଲ ।

ସତି ପଚାରିଲା, କ'ଣ ହୋଇଛି କି ?

କଣ ହୋଇନି ? ଛତୁ ହୋଇଛି । ଡାଲି ପୋଡ଼ି ଯାଇଛି, ଭାତ ପେଜୁଆ, ତରକାରି ଲୁଣିଆ—ଆଉ କଣ ହୋଇଥାନ୍ତା ? ସ୍ୱାମୀକୁ କଣ ମଣିଷ ଖାଆନ୍ତି ? କୁକୁରବି ଛୁଇଁବନି—ଅଚ୍ଛା ଦଇସଣ ହେଲା ମଣିଷ । ମଣ୍ଟୁବାବୁ ରାଗରେ ତମ ତମ ହୋଇ ଚାଲିଗଲେ ।

ସ୍ୱରଙ୍କୁ ଖାଇବ, କଣ ଖାଇବ ?

ସତି କହିଲା, ଅଚ୍ଛା ମୋ ରିଷ୍ଟଓ୍ୟାଚଟା ଥିଲା, ଦଅନା ଦେଖେ—ସତ ରିଷ୍ଟଓ୍ୟାଚଟା ବାହାର କରି ଦେଲା । ଗୋଟାଏ ଭଙ୍ଗା ବୋତଲ ଦେଇ କହିଲା, ଯଦି କିରସିଣ ମିଳେ ତେବେ ଆଣିବ ବୋଲିଲେ । ବାଟରେ ଚାଲିବାକୁ ଦଇସଣ—

* * *

ଗୋଟାଏ ଘଣ୍ଟା ଦୋକାନକୁ ଉଠି ସଲ୍ଲି ପଚାରିଲା, ଘଣ୍ଟା କେତେ ? ଦାମୀ ହେବ ।

ଦୋକାନୀ ଘଣ୍ଟାକୁ ଏପଟ ସେପଟ କରି ଦେଖି କହିଲା, କେଉଁଠୁ ଆଣିଲ ? ଚୋରି ମାଲ ନୁହଁତ ? ହବତ ଦଅ, ଦଶଟା ଟଙ୍କା ଦେଉଛି ।

ସରି ଆଖି ଖୋପି ହୋଇଗଲା । ଦଶଟଙ୍କା ! ସାଇମା ସୋଲଡ଼ ଗୋଲ୍ଡ଼ ଘଣ୍ଟା ଅତି କମରେ ଶହେରୁ କମ ହେବ ନାହିଁ ।

ସବୁ ଦୋକାନ ବୁଲି ବୁଲି ଗୁହଟା ବାଣ୍ଡିଲା, ସମସ୍ତଙ୍କର ସେଇ ଏକା କଥା । ଶେଷରେ ଗୋଟାଏ ଦୋକାନରେ ହୋଇ କୋଡ଼ିଏ ଟଙ୍କା ଆଣିଲା । ସବୁଜି ପାଇଁ ବସ୍ଟ କିଛି କିଣି ଗୋଟାଏ ଦୋକାନକୁ ପଶିଗଲା କବାପିଳା ଆଣିବାକୁ ।

ଲାଡ଼ୁ ଅଛି ?

ନାହିଁ ।

ତେବେ ଦୋଉଲ ଟଙ୍କାଏ ଚକଦ—

ଏତେ ବେଶୀ ?

ଭଣ ବେଶୀ ହୋଇଗଲା

ଚକଦ ପଇସା କାଗାରେ—ଟଙ୍କାଏ !

ଦୋକାନୀ ହସି ଉଠିଲା ଖୁବ ଜୋରରେ, ବେଶୀ ହୋଇଗଲା ନା ? କଲାପୋଡା ବଜାରରେ ଟଙ୍କାଏ ଭଣ ବେଶୀ ? ଏଡ଼ ହାତ ମୁଣି ବୋତଲ ଦୁଇଟଙ୍କା କରି ବିକାଣ—ଇଚ୍ଛା ଥାଉଚ ତ ନିଅ ନ ହେଲେ ନାହିଁ । ଶଶୁରଙ୍କଠାରୁ ତ ଲୁଟି ନେଇଛ, କଲାପୋଡା ଦେଇଛ । ଆଉ ତମକୁ ଛାଡ଼ିଦେବ

ବର୍ଷା ଆରମ୍ଭ ହୋଇଗଲା ।

ବସାରେ ପହଞ୍ଚିଲା ବେଳକୁ ସମ୍ପୂର୍ଣ୍ଣ ଓଦା ।

ସନ୍ଧ୍ୟା ହୋଇ ଯାଇଛି । ଘର ଅନ୍ଧାର । ଘର ଭିତରୁ ସେହ କହୁଲା, କିଏ ? ସରି ଘର ଭିତରକୁ ପଶିଯାଇ ରେଙ୍କା ପଇସା, ତେଲ ବୋତଲ, କିସ୍ତୁଟ ତକ୍ରାଟା ତଳେ ଥୋଇଲା ।

ମଣ୍ଟୁବାବୁ ପାଟି କରି କହି ଅସିଲେ, ଏ ଓଲ ସେପେଇ ହେବନି ନା କିଏ ?

ସେହ କହୁଲା, କହୁଚି, ମୋ ଦେହ କେମିତି ଖରାପ ଲାଗୁଛି—

ଦେହ ଖରାପ ଲାଗୁଛି ! ଏଇ ଜାହା ଦହ ଭଲ କି ?

ସରି କହୁଲା, ଏ ଓଲଟା ଯାଉ, ପୁଣି ସବାଳୁ ସେପେଇ କରବ ଯେ !

ଏ ଓଲ ଆରଓଲ ହୋଇ ଭଣାଦନ ଜ୍ୱଯାପ ପଡ଼ିଲଣି । ଏଇ କେତେଦନ ?

ମଣିଷ ତ ଏମେ, କ୍ରୁଅନ୍ଟାକୁ ଜର, ତା ଦେହ ଖରାପ—

ଯୋଉ ମଣିଷ—ହଠାତ୍ ଘର ଭିତରକୁ ଝଲିପଡାଇଲେ ମଣ୍ଟୁବାବୁ ।

ଓଃ, ହାତରେ ପଇସା ହୋଇ ଗଲଣି ନା, ଝଙ୍କା କେଉଁଠୁ ଆଣିଲ ?

ଭଣ୍ଡା ଖଟୀ କିଏ ।

ମୋ ଭଣ୍ଡା ନା, ଦ'ଦନ ହେଲା ମୁଁ ଖୋଜୁଛି ।

ନା ମୋ ଭଣ୍ଡା—

ଏ ଘରଟା ଜଣ ତମର...କ୍ଷୁ କ୍ଷୁ ଅଗ୍ନି ସ୍ତ୍ରୋତକୁ ଆଣି ଜାଳିଲ ଖୁଲାଇଲା—

ସେହ ଝଲଣ୍ଟାରୁ ଉଠି କହୁଲା, ମୁଁ ଯାଉଛୁ ସେପେଇ କହୁଛି—

ମଣ୍ଟୁ ଗାଳିକଲା, ନାହିଁ ଅମର ସେପେଇ ଦରକାର ନାହିଁ, ତମେ ବର୍ତ୍ତମାନ ଏଠୁ ଗଲ—

ଗଧ ଦୁଆରବନ୍ଧ ପାଖରେ ଚୁପ ହୋଇ ଠିଆହୋଇ ରହିଲା ।

ମଣ୍ଟୁବାବୁ ଘର ଭିତରକୁ ଯାଇ ତେଲ ବୋତଲକୁ ବାହାରକୁ ଗଡ଼ାଇ ଦେଲେ, କେତେଟା ଛିଣ୍ଡାଅଖା ଦୁଆରକୁ ଗଡ଼ାଇ ଦେଲେ, ଟଙ୍କାକୁ ଗୋଡ଼ରେ ଘରଯାକ ବାନ୍ଧିଦେଲେ ।

ଯାଅ ବର୍ତ୍ତମାନ ଯାଅ ମୋର ଦରକାର ନାହିଁ, ନ ହେଲେ ପୁଲିସକୁ ଡାକିବି—

ଗଧ କହିଲା, ଛୁଆଟାକୁ ଜର—ବର୍ଷା ହେଉଛି—

ଛୁଆଟାକୁ ଜର ! ଯୋବନ ଜର ! ବାହାର, ନ ହେଲେ ପୁଲିସ୍…

ଗର୍ଭି କହିଲା, ମଣ୍ଟୁବାବୁ ପୁଲିସ୍‌କୁ ଡାକିବାକୁ ପଡ଼ିବ ନାହିଁ, ଆମେ ଯାଉଛୁ ।

ଘରକୁ କହିଲା, ଗଧ, ସରଗୁଳୁ ଚାଖା—

ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ଟଙ୍କା ଶୋଇଥିଲା ଯଉଁ । ଛିଣ୍ଡା ଅଖଣ୍ଡା ଗୋଟେଇ ଧରିଲା, ଗଧ ଟାଣିଲା ସରଗୁଳୁ । ଦୁହେଁ ଫାଟକ ଡେଇଁ ବାହାରକୁ ଆସିଲେ । ବର୍ଷା ଖୁବ୍ ଜୋରରେ ହେଉଛି ।

ଗଧ ଭାଉ ଭାଉ ହୋଇ କହିଲା, ଛୁଆଟାକୁ ଜର, ଏ ବର୍ଷାରେ ସେ ଥଣ୍ଡ ବଞ୍ଚିବ ?

ସ୍ତ୍ରୀରେ ଗୁଲ୍‌ଲ୍ ଗୁଲ୍‌ଲ୍ ସେଇ ଉତ୍ତର ଦେଲା, ବଞ୍ଚିବାର ମହତାକୁ ଯେ ପାମର ଜନ୍ମ ହୋଇଛି ଗଧ !

ଭାରିଟା ମାଡ଼ିଯାଇଥିଲା, ଗଧ ବଜଳରେ ସ୍ତ୍ରୀର କଥାକୁ ଅଣ୍ଡେଳି ହୋଇଗଲା । ନାଳିପାଣି ଗଡ଼ି ଗଧ ଦେହଟା ନାଲିଆ ହୋଇଗଲା ।

## —ସାତ—

ଆଜ୍ଞା ଘୋଡା ବ୍ରସ୍ କରିବେ ? ଦୁଇଟି ପିଲା ଦ୍ୱାରରେ ପଚାରିଲେ । ସରି ସକାଳୁ ବାରଣ୍ଡାରେ ବସି ଦାନ୍ତ ଘଷୁଥିଲା । ମନାକଲା, ନାହିଁ । ପିଲା ଦୁଇଟି ପାଖକୁ ଆସି କହିଲେ, ବାବୁ ଆମେ ଶରଣାର୍ଥୀ, ପଞ୍ଜାବରୁ ଆସିଛୁ । ଘୋଡା ସଫା କରିଦେବୁ । ନାହିଁ କାହିଁକି କହୁଛନ୍ତି ? ସରି ଅଣ୍ଟାରୁ ଅଣାଏ ବାହାର କରି ତାଙ୍କ ଆଗକୁ ଫୋପାଡି ଦେଲା । ପିଲା ଭିତରୁ ଗୋଟିଏ ସେ ଅଣିଟା ଫେରାଇ ଦେଇ କହିଲା; ବାବୁ ଆମେ ସିନା ଶରଣାର୍ଥୀ, ସଲେଇ ଆସିଛୁ କିନ୍ତୁ ଭିକ ମାଗୁନୁ । ଆମେ କଣ ମୋଟିପିଲା ? ଆମେ କୃଷକ । ଆପଣତ ଘୋଡା ସଫା କଲେଣି, ଆଜ ଅଣାଟେ କାହିଁକି ଦେଉଛନ୍ତି ? ଆମେ ମାଗିବାକୁ ଆସିନାହୁଁ । ସରି ସେମାନଙ୍କ ମୁହଁକୁ ଅନାଇଲା । ପିଲାର ଓଠଟା ଥରୁଛି, ସେ ଯେପରି ରାଗିଯାଇଛି । ପିଲାଟି କହିଲା କଣ ଘୋଡା ଦେବେ ନାହିଁ ? ସରି ମୁଣ୍ଡ ହଲାଇ କହିଲା, ଘୋଡା ଜମାଟେ ନାହିଁରେ । ପିଲା ଦୁଇଟି ଚାଲିଗଲେ । ସରି ଟିଣ ମଗ୍‌ରୁ ପାଣି ଢାଳି ମୁହଁ ଧୋଇଲା ।

କାମିଜଟା ଗଳାଇ ତା ଉପରେ କୋଟ୍‌ଟା ପିନ୍ଧି ବାହାରକୁ ବାହାରିଲା, ପ୍ରତିମା କହିଲା—ଆଜି ଚୁଲି ଜଳିନାହିଁ । ଜାଳେଣି ନାହିଁ । କାଠ ସରିଗଲାଣି !

ସରି ବିରକ୍ତ ହୋଇ କହିଲା, କହିଲ ନାହିଁ ଲୁଣ ନାହିଁ, ତେଲ ନାହିଁ, କିଛି ନାହିଁ ?

ପ୍ରତିମା କହିଲା, ମୁଁ କଣ ମିଛ କହୁଛି ? ହାଣ୍ଡିଶାଳ ଦେଖନ୍ତୁ !

ସଙ୍ଗି ଚୁପ ରହି ସୁସ୍ମାକୁ ଖାଦ ମଡେଇଲା । ସବୋଳ ଦଉଡ଼ି ଆସି ବୋହୂଟୀ ପଛଆଡ଼ୁ ଭିଡ଼ିଦେଇ କହୁଲ, ବାପା, ବସ୍ତୁଟି ଆଣିବ । ସଙ୍ଗି ଚୁଲିପଡ଼ି ଚଟକଣାଟାଏ ମଡ଼ାଇଲ, କହୁଲ, ଛନ୍ତୁ ଆଣିବ । ସବୋଳ କାନ୍ଦ କାନ୍ଦ ଘର ଭିତରକୁ ଚାଲିଗଲା ।

ସଙ୍ଗି ଛକ ପାଖକୁ ଆସି ଖଣ୍ଡେ ସିଗାରେଟ୍ କାଣି ଲଗାଇଲା ।

ଅମର ଘରେ ପହଞ୍ଚିଲା ସଙ୍ଗି । ଦାଣ୍ଡ ଦୁଆର ପାଖକୁ ଶୁଣା-ଯାଉଛି ରେଣୁର ସ୍ୱର । ରେଣୁ ତା ପାର୍ଟ ଆବୃତ୍ତି କରୁଛି ହୁଏତ ।

ସଙ୍ଗି ଡାକିଲା—ରେଣୁ ରେଣୁ !

ରେଣୁ ଆସି କବାଟ ଫିଟାଇଲା, କହିଲା, ଭାଇ କି ଦାଦା ଦେଖି ନାହାନ୍ତି । କାଲି ସଞ୍ଜ ବେଳୁ ଗଲେଣି ଏତେ ବେଳଯାଏ ଫେରି ନାହାନ୍ତି ।

ସଙ୍ଗି କହିଲା, ତତେ ଏକୁଟିଆ ଛାଡ଼ିଦେଇ ଚାଲି ଯାଇଛନ୍ତି ନା ?

ରେଣୁ କିଛି କହିଲାନି । ରେଣୁ ଗୋଟାଏ ଚେୟାର ଆଣି ପକେଇ ଦେଲା ବାରଣ୍ଡାରେ । କହିଲା, ସଙ୍ଗି ଭାଇ ! ଭାଇ କହୁଥିଲେ ତୁମକୁ କୁଆଡ଼େ ଗୋଟାଏ ପାର୍ଟ ଲେଖିଦେବାକୁ ? ମୁଁ ମୁଖସ୍ଥ କରିବି ଦିଅ ।

ପାର୍ଟ ମୁଖସ୍ଥରୁ କଣ ପାଉଛୁରେ ? ତା ଅପେକ୍ଷା ବରଂ ଗୋଟାଏ ଗୀତ ଶିଖ ।

ଗୀତ ତ ଶିଖିବାକୁ ଇଚ୍ଛା, କିଏ ଶିଖେଇଦେବ ? ଥିଏଟରେ ପାର୍ଟି ତ କେଉଁ ଦିନଠୁ ଛାଡ଼ିଲେଣି । ଭାଇ ନେଇଆସିଲେ । ଖାଲି ସେଇଦିନ ଟ୍ରେନ୍‌ରେ ସେ ଯେଉଁ ପାର୍ଟଟା କହୁଥିଲେ ସେଇ ପାର୍ଟଟା କହୁଛନ୍ତି ସବୁବେଳେ ମୁଖସ୍ଥ କରିବାକୁ । ମୋତେ ଭଲ ଲାଗୁନି । ଗୋଟାଏ ଗୀତ ଶିଖେଇ ଦିଅ ।

ତୁ ଗୀତ ଶିଖିବୁ ?

ତାଃ ତରେ ମୁଁ କଣ ଜାଣେ ? ତମେ ଯାହା କହୁଚ ନା !
ସୁରି ବୋଲିଲା—

ଯଉ ଦୁଆରେ ଅସିଲ କମନୀୟ
ଅଖି ଭିତର କାଲୁ ଉପ ଛୁଇଁ ।

ଅଜ ଭିତରେ ବାହାରେ ମୋର,
ଭ୍ରମର, ତମରେ ଖାଇଲା ମୁଣ୍ଡ !

ରେଣୁ କହିଲା, ଏଟା ଗୋଟିଏ କ ଗୀତ, ଅଉ ଗୋଟିଏ ଭଲ ଗୀତ ଶିଖାଇ ଦିଅନା ! ଖାଲି କହୁଥିଲେ ତମକୁ ଢୁଅତେ ଭଲ ଗୀତ ଆସେ ।

ଢଂ ଢଂ ହୋଇ ନଅଟା ବାଜିଲା । ପ୍ରତିମା କହୁଥିଲା, ଆଜି ସ୍କୁଲ ନାହିଁ, ଡାଲି ନାହିଁ, କାଠ ନାହିଁ...କାଲି ସକାଳେ ପ୍ରଶାନ୍ତର ସ୍କୁଲ ଡ଼ିଟିଏ ଥିଲା, ତାକୁ ସମସ୍ତେ ବାଣ୍ଟି ଖାଇଥିଲେ । ଭୋକ ଆରମ୍ଭ ହୋଇ ଗଲାଣି । ମଣ୍ଡୁ ଘରେ ଥିଲାବେଳେ ଖାଇବା ଚିନ୍ତା ନଥିଲା । କାହିଁକି ଗୁଲିଆସିଲି ମଣ୍ଡୁ ଘରୁ ? ଘରବାଲି ଆଜି ସବାଙ୍କ ଆସିଥିବ ଘର ଭଡ଼ା ପାଇଁ । ସେ ଗୃହିଁଟି ଅଗଡ଼ୁସ ଭଡ଼ା । ଭଡ଼ା ଦେଲେ ସେ ବାହାର କରିଦେବ । କାଲି ମାଗୁଥିଲା, କହୁଥିଲା ଆଜି ଦେବ ବୋଲି । ଘରବାଲା ଫେରି ଯାଇଥିବ, ତା ଉପରେ ଦ୍ରୁମ ସଟିଥିବ ।

ରେଣୁ କହିଲା, ଗୋଟାଏ ଭଲ ଗୀତ ଶିଖାଇ ଦିଅନା !

ସୁରି କହିଲା, ନା ମତେ ଅଉ ଗୀତ ଆସେନା !

ନୃପେନ୍ଦ୍ର ଅସିଲା । ଦେହରେ କଳା ଓଭର କୋଟ । ମୁଣ୍ଡରେ ଦାଢ଼ୀ । ଏଁ, ନୃପେନ୍ଦ୍ର କଣ ଏ ନୁହେଁ ? ନୃପେନ୍ଦ୍ର ମୁହଁକୁ ଦାଆ

ଛାଡ଼ି ଦେଲା, କହିଲା, ଟମକ୍ରୁଜ କି ? ଫଲ୍‌ସ ଦାଢ଼ୀ ! ସତ
ଅନ୍ଧାରରେ ଯାଇଥିଲ ନା ! ଦେଖିବ କାଲି ସଭି ଅନ୍ଧାରରୁ
କଣ ମିଳିବ ? ରେଣୁ ଗରମ ଚା ଦୁ କପ୍ ଶୀଘ୍ର ନେଇ ଆସିବୁ ।
ତାପରେ ପକେଟରୁ ବାହାର କଲା ଡବାଟା ବଡ଼ ସୁନ୍ଦର,
ଏତେ ହେଟ୍ କିଏ ନୋଟ୍ ପଚାଶ ଖଣ୍ଡ । ତାପରେ ସଭି ହାତକୁ ଗୋଟିଏ
ଫଟୋ ବଢ଼ାଇ ଦେଲା । ଗୋଟାଏ ନଗ୍ନ ନାରୀମୂର୍ତ୍ତି ! ନୃପେନ୍ଦ୍ର
ଖେଁ ଖେଁ ହୋଇ ହସି ଉଠିଲା ! କମ ତ ସହଜ ନୁହେଁ ? ଫାଷ୍ଟ
କ୍ଲାସରେ ସାହେବ ସୁଟ୍ ପିନ୍ଧି ଯାଉଥିଲୁ ଅତି ଭଦ୍ର ବେଶରେ, କିନ୍ତୁ
ପକେଟରେ ଏଇ ଛବି ! ତମେ ଆମ ସଙ୍ଗରେ ଯୋଗ ଦେବା କଥା
କହୁଁ ଥିଲ ? ନା, ଗୁରୁକରି ଦେଉଁଠୁ ପାଇଲଣି ?

ରେଣୁ ଚା ଦୁଇ କପ୍ ନେଇ ଆସିଲା । ସଭି ଓ ନୃପେନ୍ଦ୍ର ତା
ହାତରୁ ଦୁଇ କପ୍ ଚା ନେଇ ପିଇବାକୁ ଲାଗିଲେ । ରେଣୁ କହିଲା,
ଦେଖିଲ ଦାଦା, ଭାଇଙ୍କୁ କହୁଛି ଯେ ଟଗୋଟେ ଗୀତ ଶିଖେଇ ଦବାକୁ
ନାହିଁ କରୁଛନ୍ତି । କହୁଛନ୍ତି କୁଆଡ଼େ ଗୀତ ଅପେରା—ହିଁ, ସଭି
ଭାଇ କୁଆଡ଼େ ନୂଆ ବୋଉଙ୍କୁ ଆମ ଘରକୁ ଆଣୁଥିଲ ପରା ?
ଭୋଜିଦିନ ଆଣିବ ?

ସଭି ଚା କପ୍‌ଟା ରେଣୁ ହାତକୁ ବଢ଼ାଇ ଦେଇ କହିଲା,
ଟିକିଏ କାମ ଅଛି, ଯାଉଛି ।

ସୁଧାଂଶୁ ବାବୁ ବଗିଚାରେ ଥିଲେ । ସୁଧାଂଶୁ ବାବୁ କହୁଥିଲେ,
ବୁଝିଲେ ସଭି ବାବୁ, ଏ ଫୁଲ ଗଛ ନା କଣ କହୁଥାନ୍ତେ ? ଦେଖନ୍ତୁ
ମୁଁ ଚନ୍ଦ୍ରମଲ୍ଲୀ ଦଳର, ଏଟା ନାଁ ହେଉଛି ଗୋଲାପ, ଯା ନା ଲିଲିୟମ, ସେ
ଭଲୋପମ, ବ୍ଲୁ ବେଲିଭଟି, ମତେ ବ୍ଲୁ ରଙ୍ଗଟା କେମିତି ଭଲ ଲାଗେ;
କିନ୍ତୁ ରେଡ୍ ବେଲିଭଟିଟା ଆଣିଲି ନାହିଁ । ଏଇଟା କୋରିଅ, ଅଭ

ସେ ମଞ୍ଜୀବୁଦା ପାଖରୁ ସୋଉଟା ଲଗିଛି ତା ନାଁ ହେଉଛି, ଜରବେରା—

ମିନା ଦଉଡ଼ି ଆସିଲା । ଭାଇ ଫେଲୁର ଜଣ ହୋଇଯାଉଛି । ବୋବାଉଛି, ତଳେ ଗଡ଼ୁଛି । ଜଣେ ହେଲା କିଛି ବୁଝି ପାରୁନି— ଡାକ୍ତରଙ୍କୁ ଟିକିଏ ଡକାଇ ପଠାଇଲେ—।

ସୁଧାଂଶୁ ବାବୁ ନିଜ କାମରେ ବ୍ୟସ୍ତ ରହି କହିଲେ, ବର୍ତ୍ତମାନ ମୁଁ ଗାର୍ଡ଼େନ ଆୱାର୍ଡ ଗୁଣ୍ଡ ରୂପରେ ଯାଇ ପାରିବନି । ଜାଣୁ, ଏ ଗାର୍ଡ଼େନରେ ଏ ବର୍ଷ ଅଠ'ଶ ଟଙ୍କା ଖର୍ଚ୍ଚ କଲିଣି, ଆଉ ପୁଣି ମଗାଇଛି ଷଡ଼େ ହଜାର ମଂଜି, ଦାର୍ଜିଲିଂ ର କରିବ ଗୋଟାଏ ଫୁଲ ବଗିଚା— ଲଣ୍ଡନ ଫୁଲ···ତୋ ଫେଲୁ କଥା ଛାଡ଼ୁ ବୁଝଂ—।

ମିନା କହିଲା, ଜାଣନ୍ତି ଫେଲୁକୁ କେତେ ମୁଁ ଭଲ ପାଏ ! ସେ ଜନ୍ତୁ, ତାର ଜୀବନ ଅଛି, ଆଉ ଏ ଫୁଲ ଗୁଡ଼ାକଙ୍କର କଣ ଜୀବନ ଅଛି ?

ସୁଧାଂଶୁ ବାବୁ ହସି ହସି କହିଲେ, ତୋର କମନ୍ ସେନ୍ସ ଏତେ କମ ନା ? ସାର୍ ଜଗଦୀଶ ଚନ୍ଦ୍ର ବୋଷ କଣ ଆବିଷ୍କାର କରିଛନ୍ତି ? ଫୁଲ ଗଛର ଜୀବନ ନାହିଁ ? ହାଃ—ହାଃ—ହାଃ—

ମିନା ତାଙ୍କ ହାତ ଧରି ଭିଡ଼ି ନେଲା, ଭାଇ, ଏତେବେଳେ ଆଉ ହଇରାଣ କରନା । ଆସ, ଫେଲୁ ଯାଉ ମରିଯାଏ—। ମିନାର ଆଖି ଛଳ ଛଳ ହୋଇ ଆସିଲା । ସୁଧାଂଶୁ ବାବୁ ଗୁଲିଗଲେ ।

ଡାକ୍ତର ଆସିଲା ବେଳକୁ ଫେଲୁ ଛୁଆଟାଏ କରି ଜର ସାର- ଥିଲା । ଖାଲି ଡାକ୍ତର ବାବୁ ଫିସଟା ନେଇ ଗୁଲିଗଲେ ।

ମିନା ଗୁ ପିଉ ପିଉ କହିଲା, ମୁଁ ଭାବୁଛି ଦଳେ ବଲ୍ କୁକୁର ରଖିବା—କେମିତି ?

ସୁଧାଂଶୁ ବାବୁ କହିଲେ, ଅବଶ୍ୟ ମୋର ପୁନର୍ଗଠନ ଯୋଜନାରେ ସେତକ ଅଛି, ସେତେବେଳେ ଦେଖିବୁ ! ସୁଧାଂଶୁ ଖାଲି ଯୋଜନା କର ଯୋଜନାରେ ପର୍ଯ୍ୟବେଶିତ କରେ ନାହିଁ, ତାକୁ କାର୍ଯ୍ୟକାରୀ ବି କରେ !

ମିନା କହିଲା, ଏ ଗାଈଗୁଡ଼ା ଛାଡ଼ି ଦେଲେ ଭଲ ହୁଅନ୍ତା । ଦୁଧ ତ କିଣିବାକୁ ମିଳେ । ଗାଈର ଗୋବରଗୁଡ଼ାକ ହିଁ ଖଞ୍ଜ ! ସାରା ଘରଯାକେ ଅପରିଷ୍କାର କରୁଛନ୍ତି ।

ବୁକର ଗୋଟିଏ ଟିଣ ପାତ୍ରରେ କିଛି ମାଂସ ଆଣି ଥୋଇ ଦେଲା କୁକୁର ଆଗରେ ।

ମିନା ଜିଜ୍ଞାସିଲା, ସକାଳେ ଟେଲିଫ ଖାବୁନ ଜଣେ ଗ୍ୟାସୋଲ ଦେଇଥିଲୁନା ?

ହଁ ମା ।

ହୋପ୍‌ଲେସ୍, ହଁ ମା କଣ ? ତତେ କେତେଥର ମନା କରିଛି ମା ବୋଲି କହିବୁନି ବୋଲି ।

ବୁକର ଚାଲିଗଲା ।

ପ୍ରତିମା ଯଦି ଏକ କୁକୁର ଟେଲ୍ ହୋଇଥାଆନ୍ତା ! ସବୁବେଳ ଯଦି ହୋଇଥାନ୍ତା ସୁଧାଂଶୁ ବାବୁଙ୍କ ବଗିଚାର ଗୋଟିଏ ଫୁଲ୍ ଗଛ । ମଲାବେଳକୁ ନିଶ୍ଚୟ ଭାବିବ ସେ, ହେ ପ୍ରଭୁ, ପୁନର୍ଜନ୍ମ ଯଦି ଥାଏ, ତେବେ ପରଜନ୍ମରେ ବଡ଼ଲୋକଙ୍କ ବଂଗ୍ଲାରେ ଯେମିତି ମତେ ମୋତେ ଗୋଟିଏ ଫୁଲଗଛ କର ! ମଣିଷ ଜୀବନ ନ ହେଉ ସେମିତି ପ୍ରଭୁ ! ମଣିଷ ଜୀବନଠୁ ଢେର ଭଲ ଏକ ଫୁଲ ଗଛର ଜୀବନ !

ସବୁ ଟେବୁଲକୁ ଚାହିଁଥାଏ । ମାଂସ ଶେଷ ହୋଇ ଆସିଲଣି । ଯଦି ଏଠି କେହି ନ ଥାନ୍ତେ, ତେବେ ଏଇ ମୁହୂର୍ତ୍ତରେ ଟେବୁଲ୍‌ଠୁ ସେ ଖଣ୍ଡିକ ଆଣି ନିଶ୍ଚୟ ଖାଇ ଦିଅନ୍ତା !

ମିନା କହିଲା, କିଏ ଲେଖିବେ ?

ଫୁଲ ବିଷୟରେ କିଏ ଇତିହାସ ଲେଖିବ ?

ମୁଁ ଯଦି ଐତିହାସିକ ହୋଇଥାନ୍ତି, ତେବେ ନିଶ୍ଚୟ ଗୋଟାଏ ବଡ଼ ଇତିହାସ ଲେଖିଥାନ୍ତି ଏଇ ଫରଗେଟ୍ ମି ନଟ୍ ଫୁଲ ବିଷୟରେ !

ସଞ୍ଜି ଚୁପ ରହିଲା । ପ୍ରତିମା ଚାହିଁ ବସିଥିବ, ଚୁଲିଲ ତାଙ୍କ ହାତ ନେଇଗଲେ ସେଫେଇ ହେବ । ପକେଟରେ ଥିଲା ଅଣ୍ଡାଏ, ସିଗାରେଟର ଧୂଆଁରେ କୁଣ୍ଡଳୀ ଖାଇ ଆକାଶରେ ମିଶିଯାଉଛି । ଖାଲି ପକେଟରେ ପଡ଼ିଛି ଗୋଟାଏ ଖାଲି ଡିଆସିଲି ଖୋଳ । ଆଉ ପକେଟରେ ଗୋଟାଏ ପିନକଣ୍ଟା !

ମିନା କହିଲା, ଆପଣ ସତେ ଖୁବ ସରଳ !

ସତେ ନା କଣ !

ମୁଁ—ମୁଁ—ଆପଣଙ୍କୁ ଭଲପାଏ—

ସଞ୍ଜି ଚୁପ ରହିଲା । ମିନା ସଞ୍ଜିର ହାତ ହଲାଇ ଦେଇ କହିଲା, ଐତିହାସିକ ଅଥଚ ଜାଣିପାରିଲେନି ମୋ ହୃଦୟରେ କହୁଛି ଭଲପାଇବା ? ସେ ଦିନ ସେ ଫୁଲଟାରୁ କଣ ଅନୁମାନ କରିପାରିଲେନି ? ଆଉ ମଫସଲ୍ ଝିଅ ପରି କଣ ଲେଖିଥାନ୍ତି—

ଅକାଶେ ଚନ୍ଦ୍ରମା ଜଳରେ କଇଁ
ମନେ ରଖିଥିବ ଭୁଲିବ ନାହିଁ !

ସ୍ୱାତି କହିଲା, କିଛି ଆପତ୍ତି ନ ଥିଲା, କିନ୍ତୁ ଅସୁବିଧା ହେଉଛି ଯେ ମୁଁ ବିବାହ କରିପାରିବି ।

ମିତ୍ରା ଖୁବ ଜୋରରେ ହସିଉଠିଲା । କହିଲା, ମୁଁ ତ କହୁନାହିଁ ବାହାହେବାକୁ । ମୁଁ କହୁଛି, ମୁଁ ଆପଣଙ୍କୁ ଭଲପାଏ । ବିବାହ ନ କଲେ କଣ ପ୍ରଣୟ କରାଯାଇପାରେ ନା ? ଧରନ୍ତୁ ଏଇ ଛେଳି, ଛେଳିଙ୍କ ତ କେହି ବାହା ହୋଇ ନାହାନ୍ତି, କିନ୍ତୁ ସମସ୍ତେ ତା ସଙ୍ଗେ ହୁଏତ ପ୍ରଣୟ କରୁଛନ୍ତି, ପ୍ରେମ କରୁଛନ୍ତି···

ସରୋଜ କହିଥିଲା ଷ୍ଟ୍ରଟ ଆଣିବାକୁ । ସିଗାରେଟ ଦେଈ ଦରକାର ନା ଷ୍ଟ୍ରଟ ? ପାଞ୍ଚ ବର୍ଷର ସରୋଜ କଣ ଜାଣେ ଏ କଥା ?

ପ୍ରତିମା ଅପେକ୍ଷା କରିଥିବ ଆଉ ଆଶା କରୁଥିବ ତାଲି, ଗୁଡ଼ାଇଲ୍ ବାଠ—ଅପେକ୍ଷା ଅପେକ୍ଷାରେ ହିଁ ଶେଷ ହେବ ।

ସ୍ୱାତି ଉଠିଲା । କହିଲା, ମୁଁ ଯାଉଛି ମିତ୍ରା ଦେବୀ !

ମିତ୍ରା କହିଲା, ଯାଇପାରନ୍ତି, କିନ୍ତୁ ପାଞ୍ଚଟା ବେଳକୁ ଫେରିବ ଯେବ ଆସନ୍ତୁ, ବ୍ରିଜପାର୍ଟି ଖେଳିବା । ଆଜି ଆପଣଙ୍କୁ ନିଶ୍ଚୟ ଶିଖାଇ ଦେବ ।

ବାହାରେ ଦେଖାଦେଲା ଘରବାଲା । କହିଲା, ବେଶ ଭଦ୍ର-ଲୋକତ ! ମତେ କହୁଥିଲେ ନା ଘରେ ସକାଳେ ଥିବେ ବୋଲି ? ଫାଙ୍କିଦେଲେ ଚଳିବନି । ଆଉ ଗୋଟାଏ ଲୋକ ସାଙ୍ଗେ ସାଙ୍ଗେ ଟଙ୍କା ଯାଚୁଥିଲା, ତାଙ୍କୁ କଥା ଦେଇଥିଲି ବୋଲି ତାକୁ ନାହିଁ କରିଦେଲି । ଯଦି ଆଜି ନ ଦେଇପାରିବ, ତେବେ ସନ୍ଧ୍ୟାବେଳକୁ ଘର ଖାଲି କରିଦେବ !

ନୃପେନ୍ଦ୍ର ପାଖକୁ ଗଲେ ଧାର ମିଳନ୍ତା ।

ନୃପେନ୍ଦ୍ର ଘରେ ନ ଥିଲା । ରେଣୁ ରୋଷାଇ କରୁଥିଲା । ସରିତକୁ ଦେଖି ବୋପେଇ ଘରୁ ବାହାରକୁ ଆସିଲା ।

କଣ ଆଜ ଦଅରେ ଆସିଲଣି ? ଆମର ଭାଗ୍ୟ ।

ରେଣୁ କଣ ଟଙ୍କା କେତୋଟା ଧାର ଦେବନି ? କାଲି ଠାରୁ ଉପାସ । ଘରବାଲା ଟଙ୍କାପାଇଁ ଜିଦ୍ ଧରିଛି । ନା, ରେଣୁକୁ ମାଗିବା ଠିକ ହେବନି ।

ରେଣୁ କହିଲା, ବସ, ଦାଦା ଆସିବେ ଯେ ।

ସରିତ ଚାଲିଆସିଲା ।

ପ୍ରଶସ୍ତ ରାଜପଥ । କାର, ରିକ୍ସା, ଘୋଡ଼ାଗାଡ଼ି ଛୁଟିଛି । ଏ ରାସ୍ତା କଣ ମନେ ରଖିବ ଦିନେ ଅଧ୍ୟାପକ—ନା—ଅସ୍ପୃଶ୍ୟପ୍ରାର୍ଥୀ, ନା—ନା—ତାଠାରୁ ଭଲହେବ—କାଙ୍ଗାଳ ସରିତ ବୋଝ ଯାଉଥିଲା ଜ୍ୱାସରେ, ଶ୍ରେଷ୍ଠରେ ତା ଉପରେ ?

ଅତୀତର କେଉଁ ମୁହୂର୍ତ୍ତରେ ଅଲାଉଦ୍ଦିନ କୁଆଡ଼େ ଗୋଟାଏ ମ୍ୟାଜିକ୍ ଦୀପ ସାହାଯ୍ୟରେ କେତେ କଥା କରିପାରୁଥିଲା । ଗୋଟାଏ ରାତିରେ ପ୍ରକାଣ୍ଡ ପ୍ରାସାଦ ତୋଳା ହୋଇଥିଲା ସେଇ ଦୀପ ସାହାଯ୍ୟରେ ! ଆଉ ଗୋଟାଏ ଲୋକ କୁଆଡ଼େ ଧୂଳି ଫୁଙ୍କି ଦେଲେ ଧୂଳି ଟଙ୍କ ହୋଇ ଯାଉଥିଲା ! ଆଜି ତାକୁ ଯଦି କିଏ ଶିଖାଇ ଦିଅନ୍ତା ସେ ମ୍ୟାଜିକ୍ !

ପାଖ ହୋଟେଲରୁ ଭାସି ଆସୁଛି ରେଡ଼ିଓର ସ୍ୱର । ଅଲ୍ଇଣ୍ଡିଆ ରେଡ଼ିଓର ଦ୍ୱିତୀୟ ଅଧିବେଶନ ଆରମ୍ଭ ହୋଇଗଲାଣି । ସ୍ୱାସ୍ଥ୍ୟରକ୍ଷା ବିଷୟରେ କିଏ ଜଣେ ବକ୍ତୃତା ଦେଉଛନ୍ତି···ଘରଠାରୁ ଟିକିଏ ଦୂର-କର ପାଇଖାନା କରିବ, ଗୁହାଳ ଶୋଇବା ଘରଠାରୁ ଦୂରରେ ହେବା ଦରକାର । ଖାଇବା ଜିନିଷରେ ମାଛି ବସାଇ ଦେବ ନାହିଁ—ଅଧଘଣ୍ଟାଏ ପୂର୍ବରୁ ବା ପରେ ପାଣି ପିଇବା ଉଚିତ—ସକାଳୁ

ବ୍ୟାୟାମ କଲେ ଦେହ ଭଲ ରହେ··· । ବାଙ୍ଗାଲ ସଭି ବୋଧ ଏଥିରୁ କେଉଁଟି ମାନବ ତାର ସ୍ୱାସ୍ଥ୍ୟରକ୍ଷା ପାଇଁ ? ତାର କଣ ଦେହ ଅଛି ? ଅଛି ଖାଲି ହାଡ଼, ଶିରା, ଅଙ୍ଗାର, ଅନାହାର, ଖାଦ୍ୟଯନ୍ତ୍ରଣା—ମୃତ୍ୟୁ-ଯନ୍ତ୍ରଣା ! ସେ କଣ ମଣିଷ ? ସେ ବାଙ୍ଗାଲ, ଆଶ୍ରୟପ୍ରାର୍ଥୀ, ଭିକାରି !

ଗୋଟାଏ ଲୋଟା ଭିକାରୀ ଗୁଳିଗଲା ! ପିଲାମାନେ ତାକୁ ଛୁଟକା ସବାରଚନ୍ଦ୍ର ଆଉ କମୁଚନ୍ଦ୍ର, ଲେଙ୍ଗଡ଼ାଟାଏରେ ଲୋଟାଟାଏ—ଧାନ ଭୁଟୁରୁ···ଧାନ ଭୁଟୁରୁ - ହାଃ—ହାଃ—ହାଃ—

ନାଳରେ ଥିବା ପାଣିତକକୁ ଘେଣ୍ଟଭଳି ପାଣି ପିଇଲା ।

ଛକ ଅଣ୍ଟା ଦୁଏତ ଗୁଳାର ତ ପଛେ ପଛେ । ବା ବାଙ୍ଗାଲକୁ କହୁଛି ମରେ ତମେ ସବୁ ମାରିଥିଲନା ? ପାପ ଫଳ ! ଓଃ କି ଯନ୍ତ୍ରଣା ! ପାଣି ପିଇ ଦେବାକୁ ପେଟ ବେଶି ବାଧା କରୁଛି । ଖପରେ ଗୁଳି ଗୁଳି ମୁଣ୍ଡ ବୁଲାଇବା ଆରମ୍ଭ ହୋଇ ଗଲାଣି ! ଛକ ଅଣ୍ଟା ଭିତରେ ଫୁଟି ଉଠିଲା ହସ—କଲ ହୋଇଛି—ଭଲ ହୋଇଛି—ଯେତେ ମାରିଥିଲ, ତମେ ସବୁ ମରିବନି ? ମରିବ—ସବୁ ମରିବ—ଅସ୍ପୃଶ୍ୟ ମରିବ !

ସତେ କି ଖଣେଇ ଖଣେଇ କହୁଛି, ବାପା ବଞ୍ଚାଅ !

ମିନା ହସି ହସି କହୁଛି, ବୋଲା ବୋଲ ଆଉ ବାଙ୍ଗାଳ ବୋଲ ତାକୁ ଭଲପାଏ । ସଭି ପଛକୁ ଗୁହାଁଲା, ପଛରୁ କାଉଟାଏ ଆସୁଛି ।

ଘର ଆଗରେ ପୋଲିସ ଦେଖି ସଭି ଡରିଗଲେ । ସେ ପଟକୁ ଠିଆ ହୋଇଚନ୍ତି ମଣ୍ଡଳ ବାବୁ, ଆଉ ପାଖରୁ ପୋଲିସ ଇନସ୍ପେକ୍ଟର । ଆଉ କେତେ ଗୁଡ଼ାଏ ଲୋକ ।

ମଣ୍ଟୁବାବୁ ହାତଠାରି କହିଲେ, ଏଇ ଅଧ୍ୟାପକ ସଇଁ ବୋଷ ।

ଇନ୍‌ସପେକ୍ଟର ହସି ହସି ସଇଁ ପାଖକୁ ଆସି କହିଲେ, ଆପଣ ?

ସଇଁ କହିଲା, ନା, ନା, ମୁଁ ଅଧ୍ୟାପକ ସଇଁ ବୋଷ ନୁହେଁ, ବାଙ୍ଗାଲ ସଇଁ ବୋ।

ମଣ୍ଟୁବାବୁ ହସି ଉଠି କହିଲେ, ଭୁଲ କହିଲେ, ବାଙ୍ଗାଲ ସଇଁ ବୋଷ ନୁହେଁ, ଉଦ୍ଧାଏତ ସଇଁ ବୋଷ ।

ସଇଁ ମଣ୍ଟୁବାବୁ ମୁହଁକୁ ଚାହିଁଲା । ମଣ୍ଟୁବାବୁଙ୍କ ଓଠରେ ଖେଳି ଉଠିଲା ହସ ।

ଫୋଲ୍ଡର ଗୋଟାଏ ହାତକୁ ଆଣି ଦେଖାଇଲେ । ସଇଁ ପଚାରିଲା, ଏଥିରେ ?

ଇନ୍‌ସପେକ୍ଟର କହିଲେ, ତାଙ୍କ ହାତରେ ମଣ୍ଟୁବାବୁଙ୍କ ଘରୁ ଚୋରି ଯାଇଥିଲା । ଆଜି ସକାଳ ୯ଟାରେ ପୋଲିସ ଖାନ ତଲାସ କରି ଆପଣଙ୍କ ଘରୁ ପାଇଲେ ସେ ଜିନିଷ । ପକେଟରୁ ବାହାର କଲେ ଗୋଟା ସୁନାହାର, ଗୋଟାଏ ହୀରାବସା ମୁଦି । ମନେ ପଡୁଛି—?

ସଇଁ ପ୍ରତିବାଦ କରି କହିଲା, ନା, ନା, ମୁଁ ଚୋରି କରିନି । ମିଛ ମିଛ—

ସେ [illegible] କନ୍‌ଷ୍ଟେବଲଙ୍କୁ ଆସି ଯାଉଥିଲା । ସଇଁକୁ ଦୁଇଟା କନ୍‌ଷ୍ଟେବଲ ଟାଣିନେଲେ ମଟର ଭିତରକୁ ।

ସଇଁ ଚାହିଁଲା ମଣ୍ଟୁ ଆଡ଼େ । ମଣ୍ଟୁ ତାଙ୍କ ନିଜ କାରରେ ଉଠିବାକୁ ଯାଉଥିଲେ ।

ତୁଅର ମୁହ ପାଖରେ ସର୍ବୋଚ୍ଚ ଠିକ ହୋଇ ଯାଉଛି ଘାଟିଭର୍ । ତା ପାଖରେ ଠିକ ହୋଇଛି ପ୍ରତିମା, ଆଖିରୁ ତାର ଲୁହ ଝରଝରୁଛି ।

ସର୍ଜି ଆଖିରୁ ଝରିପଡ଼ିଲା ଦୁଇ ବୁନ୍ଦ ଲୁହ । ସେଇ ଲୁହର ପ୍ରତି ବୁନ୍ଦ, ତା ଦେହର ପ୍ରତ୍ୟେକ ଅଣୁ ପରମାଣୁ ଯେପରି ଚିତ୍କାର କରି କହୁଥିଲା—ହେ ଦେବ, ତତେ ମୁ ଭଲପାଏ, ତତେ ମୁଁ ଭଲପାଏ···

ତାଳଚେର୍
ଡାକ୍ତରା: ୧୯୮୫

---

## ଏହା ପରେ ପଢନ୍ତୁ—

### ଉପନ୍ୟାସ

ଯତୀନ୍ଦ୍ର କୁମାର ଦାସଙ୍କର—

| | | |
|---|---|---|
| ମାନସୀ | ବନ୍ଧାଇ | ଟ ୨ ୯ |
| | ଅବନ୍ଧା- | ଟ ୧ ୪ |
| ଜନରବ | ଅବନ୍ଧା- | ଟ ୧ ୭ |
| | ସ୍ବର୍ଣ୍ଣ ବନ୍ଧାଇ | ଟ ୨ ୯ |
| ମନର ମୟୁର | | ଟ ୧ ୭ |

ରାମଚନ୍ଦ୍ର ବେହେରାଙ୍କର—

| | |
|---|---|
| ଉତଲହୁ | ଟ ୦ ୭ |
| ଜ୍ୟୋତ୍ସ୍ନା : ଜନପ୍ରିୟ ସଂସ୍କରଣ | ଟ ୧ ୯ |

ବିଖ୍ୟାତ ଫରାସୀ ଔପନ୍ୟାସିକ

| | |
|---|---|
| ଭିକ୍ଟର ହ୍ୟୁଗୋଙ୍କର : ଫାଶୀ | ଟ ୧ ୯ |

### ଗଳ୍ପ ସଙ୍କଳନ

ଯତୀନ୍ଦ୍ର କୁମାର ଦାସଙ୍କର—

| | |
|---|---|
| ନେହୁ ପୃଥିବୀର ନାଗରିକ | ଟ ୧ ୯ |
| କପୋତ କପୋତୀ | ଟ ୦ ୬ |

—ପ୍ରକାଶକ—

ସାହିତ୍ୟ ସଂସାର ବାଲୁବଜାର, କଟକ-୨